# ଝୁଲା ପୁସ୍ତକାଳୟ—ଅମୃତ କଳସ



युग-निर्माण-योजना, मथुरा



ପ: ପୂଜ୍ୟ ଆଚାର୍ଯ୍ୟଜୀ

ପ୍ରକାଶକ:—
ଯୁଗ-ନିର୍ମାଣ ଯୋଜନା,
ଗାୟତ୍ରୀ ତପୋଭୂମି, ମଥୁରା (ଉ:ପ୍ର:).



ଅନୁବାଦକ—
ମଧୁସୂଦନ ପଣ୍ଡା,
ଘଉଉଟକାଲ (ଓଡ଼ିଶା)



ପ୍ରଥମ ସଂସ୍କରଣ ୧୯୭୨—୫୦୦୦

ମୂଲ୍ୟ
୨୪ ପଇସା

# ଝୋଲା ପୁସ୍ତକାଳୟ—ଅମୃତ କଳସ

"ଝୁଲ" ଗୋଟିଏ ଉପଯୋଗୀ ଏବଂ ଆବଶ୍ୟକୀୟ ବସ୍ତୁ । କିଛି ଦରକାରୀ ଜିନିଷ ସଙ୍ଗରେ ନେବାକୁ ହେଲେ ଝୁଲଟିଏ ଆବଶ୍ୟକ ହୋଇଥାଏ । ବଜାରରୁ ଛୋଟ ଛୋଟ ଜିନିଷ କିଣିବାକୁ ହେଲେ, ଲୋକମାନେ ଝୁଲ ଖଣ୍ଡିଏ ସଙ୍ଗରେ ଧରିଥାନ୍ତି । ପିଲାଏ ସ୍କୁଲକୁ ଯିବାବେଳେ ବହିପତ୍ର ଓ କଲମଖିଆ ଝୁଲରେ ଭରି ନେଇଯାନ୍ତି । ସନ୍ଥ ମହାତ୍ମାମାନଙ୍କ ଲାଗି ତଥା ପୂଜା-ପାଠ କରିବା ଲୋକଙ୍କ ପାଇଁ ଝୁଲର ଆବଶ୍ୟକତା ଅଧିକ । ଏମିତି ଏ ଯୁଗରେ ସମସ୍ତେ ଝୁଲ ବ୍ୟବହାରର ଆବଶ୍ୟକତା ଅନୁଭବ କରୁଛନ୍ତି । ତେଣୁ ତାହା ବହୁଳ ତିଆରି ହେଉଛି ଓ ବର୍ଦ୍ଧି ହେଉଛି । ଝୁଲ ଉପରେ ବିଜ୍ଞାପନ ଛପି, ତାହାକୁ ଉପହାର ଦେବା ମଧ୍ୟ ଏବେ ଚାଲୁଛି । ହାତରେ ଧରିଯାଇ ଥିବା ସମୟରେ ଏହି ପ୍ରକାର ଝୁଲ ଉପରେ ଛପା ଯାଇଥିବା ବିଜ୍ଞାପନର ପ୍ରସାର ହୋଇଥାଏ । ଫେରିବାଲାମାନେ ସେମାନଙ୍କ ଜିନିଷ ବଡ଼ ବଡ଼ ଝୁଲରେ ରଖି ଥାଆନ୍ତି ଏବଂ ଦରକାର ହେଲେ ଏଥିରୁ ଜିନିଷ ବାହାର କରି ଗ୍ରାହକମାନଙ୍କୁ ଦେଖାଇଥାନ୍ତି । ସ୍ୱେଚ୍ଛାସେବୀ କାର୍ଯ୍ୟକର୍ତ୍ତାଙ୍କ ପକ୍ଷରେ ଏହା ଗୋଟିଏ ଫେସନ୍ ଜିନିଷ ହୋଇଗଲାଣି, ସୈନିକଠାରୁ ଆରମ୍ଭ କରି ସ୍ୱୟଂସେବକ ପର୍ଯ୍ୟନ୍ତ ସମସ୍ତେ ଯାତ୍ରାକାଳରେ ଏ ଜିନିଷର ଅନିବାର୍ଯ୍ୟ ଆବଶ୍ୟକତା ଅନୁଭବ କରିଥାନ୍ତି ।

ଭିକ୍ଷା ପାଇଁ ମଧ୍ୟ ଝୁଲର ବ୍ୟବହାର ହୋଇଥାଏ । ତେଣୁ କେବେ କେବେ ଧାରଣା ହୋଇଥାଏ ଯେ ଝୁଲ ଏକ ହୀନବସ୍ତୁ । ଅନ୍ୟ ଦିଗରେ ଦୃଷ୍ଟି ଦେଲେ ଯେତେବେଳେ ଦେଖାଯାଏ ଏହା ଅତ୍ୟନ୍ତ ଉପଯୋଗୀ ଜିନିଷଟିଏ, ସେତେବେଳେ ଏହାକୁ ସଙ୍ଗରେ ରଖିବାକୁ ସଙ୍କୋଚ ଜାତ ହୁଏ ନାହିଁ । ଏବେ ଝୁଲଟିଏ ନେଇ ବାହାରିଲେ, କାହାରିକୁ ଖରାପ ଲାଗୁନାହିଁ । ବରଂ ଏହା ସର୍ବୋପଯୋଗୀ ଓ ସର୍ବତ୍ର-ପ୍ରଚଳିତ ଜିନିଷ ରୂପେ ପରିଚିତ ହୋଇଛି । ଏବେ କେହି ଝୁଲକୁ ହାତରେ ଧରି କିମ୍ବା କାନ୍ଧରେ ଝୁଲାଇ ବାହାରିଲେ, ତାଙ୍କୁ ସଙ୍କୋଚ ବୋଧ ହେଉନାହିଁ ।

ଆଜିକାଲି ପ୍ଲାଷ୍ଟିକ୍‌ରେ ଓ କେନ୍‌ଭାସ୍‌ରେ ବହୁପ୍ରକାରର ରଙ୍ଗଢଙ୍ଗଯୁକ୍ତ ଝୁଲି ବାହାରିଲଣି । ସେ ସବୁକୁ ସାଥୀରେ ଧରିଗଲେ ସମ୍ମାନ ହାନିର ପ୍ରଶ୍ନ ନାହିଁ । ବରଂ ସୁନ୍ଦର ଦେଖାଯାଏ । ଶିକ୍ଷିତା ନାରୀମାନେ, ଆବଶ୍ୟକତା ନଥିଲେ ମଧ୍ୟ, ଫେସନ୍ ହିସାବରେ ଗୋଟିଏ ଶ୍ରେଷ୍ଠ ହାତଝୁଲି (Hand bag) ହାତରେ ନେଇ ବାହାରୁଛନ୍ତି । ସର୍ବ-ସାଧାରଣ ଝୁଲି ଏବେ ଏକ ଅବହେଳିତ ବା ଅପମାନସୂଚକ ବସ୍ତୁ ହୋଇନାହିଁ ।

ଝୁଲି ପୁସ୍ତକାଳୟ ଆନ୍ଦୋଳନ ଏହାର ଉପଯୋଗିତାକୁ ବହୁଗୁଣିତ କରିଦେଇଛି । ଜନମାନସରେ ନବଜାଗରଣର ପୁଣ୍ୟ ପ୍ରେରଣା ଜଗାଇବା ଏବଂ ସର୍ବତୋମୁଖୀ ପୁନରୁତ୍‌ଥାନ ପାଇଁ ଆଲୋକ ସଞ୍ଚାର କରିବା ପାଇଁ ଏହାଠାରୁ ବଳି ଆଉ ବଡ଼ ମାଧ୍ୟମ ନାହିଁ । ମାନବ ଜୀବନର ମହିମା ତାହାର ଚରିତ୍ରଶୀଳତା ଉପରେ ନିର୍ଭର କରେ—ଏହା କହିବା ବାହୁଲ୍ୟମାତ୍ର । ଉପଯୁକ୍ତ ପ୍ରକୃତି ଚରିତ୍ର ନହେଲେ, ମନୁଷ୍ୟ, ନୀଚ, ତୁଚ୍ଛ, ହେୟ, ହୀନ, ଘୃଣିତ, ପତିତ, ନାରକୀୟ ଦସ୍ୟୁ ଏବଂ ପିଶାଚରେ ରୂପାନ୍ତରିତ ହୋଇଥାଏ । ଉତ୍କୃଷ୍ଟ ଏବଂ ମହତ୍ ଚିନ୍ତାର ସମାଗମ ଫଳରେ ନିତାନ୍ତ ହୀନ ଅବସ୍ଥାର ବ୍ୟକ୍ତି ସଫଳ, ସମୁନ୍ନତ, ସୁସ୍ଥ, ପ୍ରଗତିଶୀଳ, ଶ୍ରଦ୍ଧାସ୍ପଦ, ସର୍ବୋପଯୋଗୀ, ଶ୍ରେଷ୍ଠ ସଜ୍ଜନ, ମହାପୁରୁଷ, ଦେବଦୂତ ଏବଂ ଅବତାର ରୂପରେ ପରିଗଣିତ ହୋଇଥାଏ । ହାଡ଼-ମାଂସରେ ଗଠିତ ଏହି ତୁଚ୍ଛ ଶରୀରରେ ଯେଉଁ ମହତ୍ ଗୁଣ ଦେଖାଯାଏ, ତାହା କେବଳ ଉନ୍ନତ ଏବଂ ବଳିଷ୍ଠ ଚିନ୍ତା ପ୍ରସୂତ । ଏହାହିଁ ମନୁଷ୍ୟର ବାସ୍ତବ ମୂଲ୍ୟବାନ ସମ୍ପତ୍ତି । ଅସତ୍ ଚିନ୍ତା ଯୋଗୁ ମଣିହୀନ ସର୍ପ ସଦୃଶ ମନୁଷ୍ୟର ସ୍ଥିତି ପଶୁପକ୍ଷୀଙ୍କ ପରି ନଗଣ୍ୟ ହୋଇଯାଏ । ଉନ୍ନତ ଚିନ୍ତା ଫଳରେ ମନୁଷ୍ୟର ପ୍ରକୃତ ମନୁଷ୍ୟତା କ୍ରମେ କ୍ରମେ ବର୍ଦ୍ଧିତ ହୋଇ ଗଗନ-ଚୁମ୍ବୀ ହୋଇଥାଏ । ପରଶମଣି ପରି ସେ ଯାହାକୁ ସ୍ପର୍ଶ କରେ, ତାହା ଧନ୍ୟ ହୋଇଯାଏ ।

ଏ ଯୁଗରେ ଜନ-ସାଧାରଣଙ୍କ ଚିନ୍ତାଧାରା ପଙ୍କିଳ ଓ ଅଶ୍ଳୀଳ ହେବା ଯୋଗୁ, ନୀଚ ସ୍ତରର ଚିନ୍ତନ ହେତୁ, ଆକାଂକ୍ଷାରେ ସ୍ୱାର୍ଥ ଏବଂ ସଙ୍କୀର୍ଣ୍ଣତାର ସମାବେଶ ହେବାରୁ, ବ୍ୟକ୍ତିଗତ ଏବଂ ସାମୂହିକ ଜୀବନରେ ବହୁ ଅଭାବ, ଶୋକ-ସନ୍ତାପ, କଳହ, ସଂଘର୍ଷ, ଉଦ୍‌ବେଗ, ଅସନ୍ତୋଷ, ଅପରାଧ ଓ ସଙ୍କଟ ଦେଖା-ଦେଇଛି । ଏହି ବିକୃତ ଅବସ୍ଥା ଯୋଗୁ ଈଶ୍ୱରଙ୍କ ହର୍ଷୋଲ୍ଲାସ ଭରା ଧରିତ୍ରୀରେ ନାରକୀୟ ଦୁଃଖ-ଦାରିଦ୍ର୍ୟ ରାଜତ୍ୱ କରୁଛି । ଏଥିରୁ ମୁକ୍ତିଲାଭ କରିବାକୁ ହେଲେ

ସଂସାରକ ସମ୍ପତ୍ତି କେବଳ ଯଥେଷ୍ଟ ନୁହେଁ । ଜନ-ମାନସରେ ବିବେକ, ଦୂର-ଦର୍ଶିତା, ସୌଜନ୍ୟ, ଉଦାରତା, କର୍ତ୍ତବ୍ୟପରାୟଣତା ରୂପକ ସତ୍ ପ୍ରବୃତ୍ତିର ଅଙ୍କୁରୋଦ୍‌ଗମ ହେବା ମଧ୍ୟ ପ୍ରୟୋଜନ । ଏପରି ପ୍ରୟାସ ନ କଲେ ସୁଖ, ଶାନ୍ତି, ପ୍ରଗତି ଓ ସମୃଦ୍ଧିର ସ୍ୱପ୍ନ କେବେହେଲେ ସଫଳ ହେବନାହିଁ । କଣ୍ଟା ନ କାଢ଼ିଲେ, ବେଦନା ଦୂର ହେବ କିପରି ? ଆଜିକାଲିର ଅବିବେକିତା ମନୁଷ୍ୟକୁ ଦୀନଦୁଃଖୀ, ଆତଙ୍କିତ, ଉଦ୍‌ବିଗ୍ନ ଏବଂ ଅସହାୟ ପ୍ରାଣୀ ସ୍ତରକୁ ନେଇଆସିଛି । ଯେଉଁଦିନ ଚିନ୍ତାଧାରାର ପରିବର୍ତ୍ତନ ପର୍ଵ ପ୍ରଖର, ସଂଗଠିତ ଏବଂ ବଳବାନ ଆନ୍ଦୋଳନର ସୂତ୍ରପାତ ହେବ, ସେହିଦିନଠାରୁ ହିଁ ଏ ଦୟନୀୟ ଅବସ୍ଥା ବଦଳିଯିବ । ସେପରି ଶୁଭମୁହୂର୍ତ୍ତ ଖୁବ୍ ନିକଟରେ । ଯୁଗନିର୍ମାଣ ଯୋଜନା ମାଧ୍ୟମରେ ଏହି ପ୍ରକାର ଆନ୍ଦୋଳନର ସୂତ୍ରପାତ କରାଯାଇଛି । ଅଖଣ୍ଡ ଜ୍ୟୋତି ପରିବାରର ପରିଜନଗଣ ଯେପରି ତତ୍ପରତାର ସହିତ ଏହି ଯୋଜନାକୁ ଗତିଶୀଳ କରାଉଛନ୍ତି, ସେଥିରୁ ଆଶା କରାଯାଏ ଯେ ବିଚାର-କ୍ରାନ୍ତିର ଉଦ୍ଦେଶ୍ୟକୁ ପୂର୍ଣ୍ଣାଙ୍ଗ କରାଯାଇ ପାରିବ ଏବଂ ମନୁଷ୍ୟର ବର୍ତ୍ତମାନ ଶୋଚନୀୟ ଅବସ୍ଥାର ଦୂରୀକରଣ କରାଇ ତାହାକୁ ଦ୍ରୁତ ପ୍ରାଚୀନ ଗୌରବ ଫେରାଇ ଦିଆଯିବ ।

ଲୁହାକୁ କାଟିବାକୁ ଲୁହା ଲୋଡ଼ା ହୁଏ । ସେପରି କଣ୍ଟା କାଢ଼ିବାକୁ କଣ୍ଟା ଦରକାର । ବିଷକ୍ରିୟା ନାଶ କରିବାକୁ ବିଷ ଆବଶ୍ୟକ । ସେହିପରି ଉଚ୍ଚସ୍ତରର ଚିନ୍ତା ନିମ୍ନସ୍ତରର ଚିନ୍ତାଧାରାକୁ ନଷ୍ଟ କରେ । ପ୍ରାଚୀନ କାଳରେ ଉତ୍କୃଷ୍ଟ ଚିନ୍ତା ପ୍ରତ୍ୟେକ ମନୁଷ୍ୟର ହୃଦୟରେ ରହିଥିଲା । ତେଣୁ ସେ ଯୁଗ ମହାମାନବ ଏବଂ ନର-ରତ୍ନମାନଙ୍କର ଭଣ୍ଡାର ଥିଲା । ଏ ଯୁଗରେ ଜନ-ମାନସରେ ହୀନ ବିଚାର ଦେଖାଦେଇଛି । ତେଣୁ ନର-ପଶୁ ଓ ନର-ପିଶାଚ-ମାନଙ୍କର ସଂଖ୍ୟା ବୃଦ୍ଧିପାଇଛି । ଏହି ପରିସ୍ଥିତିର ପରିବର୍ତ୍ତନ ଲାଗି ଏକ ବିଚାରାତ୍ମକ ଓ ଭାବନାତ୍ମକ ସଂଘର୍ଷ ଆରମ୍ଭ କରିବାକୁ ହେବ । ସଦ୍‌ବିଚାର ଦ୍ୱାରା କୁବିଚାରକୁ ପରାସ୍ତ କରିବାକୁ ହେବ । ବିବେକକୁ ଅବିବେକ ବିରୁଦ୍ଧରେ ଯୁଦ୍ଧଯାତ୍ରା କରିବାକୁ ହେବ । ସଦ୍‌ଜ୍ଞାନର ପ୍ରଜ୍ୱଳିତ ମଶାଲ ନେଇ ଅଜ୍ଞାନ ଅନ୍ଧକାର ଦୂରୀଭୂତ କରିବାକୁ ପଡ଼ିବ । ଏହା ହେଉଛି ଏ ଯୁଗରେ ସର୍ବପ୍ରଥମ ଆବଶ୍ୟକତା । ଅନ୍ୟ ସମସ୍ତ ସମସ୍ୟା, ସମସ୍ତ ଆବଶ୍ୟକତା ଏହାର ତୁଳନାରେ ଗୌଣ । ଏ ଯୁଗରେ ଜନ-ମାନସରେ ଘେରିଥିବା ଅନ୍ଧକାରକୁ ଆଦର୍ଶବାଦର ଆଲୋକରେ ଆଲୋକିତ

କରିବାହିଁ ସର୍ବଶ୍ରେଷ୍ଠ ପୁଣ୍ୟକର୍ମ ।

ଯୁଗ-ନିର୍ମାଣ ଯୋଜନା ଅନ୍ତର୍ଗତ ଏହି ପ୍ରୟାସ ବ୍ୟବସ୍ଥିତ ଏବଂ ସଂଗଠିତ ରୂପରେ ଆରମ୍ଭ କରାଯାଇଛି । କୁବିଚାରକୁ ହତ୍ୟା କରିବା ଲାଗି ତୀକ୍ଷ୍ଣଧାର ସଦ୍‌ବିଚାର ପ୍ରସ୍ତୁତ କରାଯାଇଛି । ଏହା ଅତ୍ୟନ୍ତ ଫଳପ୍ରଦ ବୋଲି ମଧ୍ୟ ବୁଝାଇ ଦିଆଯାଇଛି । ଉନ୍ନତ ଚିନ୍ତାଧାରା ହୃଦୟଙ୍ଗମ କରିବା କଠିନ ଏବଂ ହାନିକାରକ— ଏପରି ଭ୍ରମ ଧାରଣାକୁ ନିରାକରଣ ଏବଂ ସଂଶୋଧନ କରାଯାଇଛି । ଯୁକ୍ତି ସଙ୍ଗତ ଉପାୟରେ, ପ୍ରମାଣ ଏବଂ ଉଦାହରଣର ଆଧାର ଉପରେ କୌଣସି ତଥ୍ୟ ବୁଝାଇ ଦେଲେ ବୁଦ୍ଧିମାନ ମନୁଷ୍ୟ ତାହା ସହଜରେ ବୁଝିପାରେ ଏବଂ ଗ୍ରହଣ କରିପାରେ । ଆଜିକାଲି ଏପରି ଚେଷ୍ଟା କରାଯାଉ ନାହିଁ । ଏପରି ଅବସ୍ଥା ଆସିଛି, ଯେଉଁଥିରେ କେବଳ ଅବାଞ୍ଛନୀୟ ଚିନ୍ତାର ପ୍ରସାର ବୃଦ୍ଧି ହେଉଛି । ବିବେକ ସଂଗତ ଭାବରେ ଆଦର୍ଶବାଦର ପ୍ରତିପାଦନ କରିବାର ଚେଷ୍ଟା ଆରମ୍ଭ ହୋଇଛି । ଏଥିଯୋଗୁଁ ବିଶ୍ୱାସ କରାଯାଉଛି ଯେ ବୁଦ୍ଧିମାନ ମନୁଷ୍ୟ ନିଜର ହିତ ଦୃଷ୍ଟିରୁ ତାହାକୁ ସ୍ୱୀକାର କରିବ ଏବଂ ତଦନୁସାରେ କାର୍ଯ୍ୟ କରିବ ।

ବ୍ୟକ୍ତିଗତ ଆଦର୍ଶ ଓ ସାମାଜିକ ପରିସ୍ଥିତି ଉପରେ ନିର୍ଭର କରି ଆମ୍ଭମାନଙ୍କୁ ଯୁଗ-ନିର୍ମାଣ କରିବାକୁ ହେବ । କେବଳ ଆଦର୍ଶବାଦ ନାମକୁମାତ୍ର ଥିଲେ କ'ଣ ସମାଜର ଉନ୍ନତି ବା ବ୍ୟକ୍ତିଗତ କଲ୍ୟାଣ ହୋଇପାରିବ ? ତେଣୁ ସତ୍ୟର କଷଟି ପଥରେ ଖାଣ୍ଟି ପ୍ରତିପାଦିତ ହୋଇଥିବା ଆଦର୍ଶ ପ୍ରତି ଅଭିରୁଚି ଏବଂ ମୂଢ଼ତା ଓ ଅନୈତିକତା ପ୍ରତି ଅରୁଚି ଉତ୍ପନ୍ନ କରିବା ଲାଗି ଯେଉଁ ବିଚାରର ଆବଶ୍ୟକତା ଅନୁଭୂତ ହେଉଥିଲା, ତାହାର ନିରନ୍ତର ପରିପ୍ରକାଶ ଯୁଗ-ନିର୍ମାଣ ଯୋଜନା ମାଧ୍ୟମରେ କରାଯାଉଛି । ମଥୁରାରେ ଶ୍ରେଷ୍ଠ ଶ୍ରେଷ୍ଠ ବିଜ୍ଞପ୍ତି ପ୍ରକାଶ କରି ଏହି ସୃଜନ କର୍ମକୁ ପରିପୁଷ୍ଟ କରାଯାଉଛି । ଏହି ଶୈଳୀରେ ଏକ ଅଦ୍‌ଭୁତ ବିଶେଷତ୍ୱ ରହିଛି । ଏହି ବିଜ୍ଞପ୍ତିମାନ ପାଠକମାନଙ୍କ ଉପରେ ପ୍ରଭାବ ବିସ୍ତାର କରିଥାଏ । ଫଳତଃ ପାଠକମାନେ ପରିବର୍ତ୍ତିତ ଏବଂ ସଂଶୋଧିତ ମନୋଭାବ ନେଇ ନିଜ ସମ୍ପର୍କରେ ଆସୁଥିବା ଅନ୍ୟମାନଙ୍କୁ ପ୍ରଭାବିତ କରିବାରେ ତତ୍ପର ହୋଇଥାନ୍ତି । ଅଳ୍ପ କେତେଦିନର କାର୍ଯ୍ୟଧାରାରୁ ପ୍ରମାଣିତ ହୋଇଛି ଯେ ଏପରି ଆନ୍ଦୋଳନ ପଥରକୁ ମଧ୍ୟ ତରଳାଇ ଦେଇପାରେ । ତୋଫାନ ପରି ଏହା ଶକ୍ତିଶାଳୀ । ଏ ବିଚାରଧାରା ଯେଉଁଠାକୁ ଯାଉଛି, ସେଠାରେ ପ୍ରଭାବ ବିସ୍ତାର କରି ପାରୁଛି । ଏହା

ବାସ୍ତବ ପରିସ୍ଥିତିକୁ ବିଚାର କରିବା ପାଇଁ ମନୁଷ୍ୟକୁ ପ୍ରେରଣା ଦେଉଛନ୍ତି ଏବଂ ଉଚିତ ଓ ଆବଶ୍ୟକୀୟ ଆଧାର ସ୍ୱୀକାର କରିବା ପାଇଁ ତାକୁ ଅନୁପ୍ରାଣିତ କରନ୍ତି । ଗତ ଅଳ୍ପଦିନ ମଧ୍ୟରେ ନବନିର୍ମାଣ ବିଚାରଧାରା ଲକ୍ଷ ଲକ୍ଷ ଲୋକଙ୍କ ମନରେ ପରିବର୍ତ୍ତନର ସୂତ୍ରପାତ କରନ୍ତି । ଏହି ଫଳାଫଳ ଦେଖିବା ପରେ ତାହାର ଉପଯୋଗିତା, ପ୍ରଖରତା, ସାମର୍ଥ୍ୟ ଏବଂ ସୃଜନାତ୍ମକ ଶକ୍ତି ବିଷୟରେ ନିଃସନ୍ଦେହ ହେବାକୁ ପଡ଼ୁଛି ।

ଗତିରୋଧ ହେଲେ ବିଚାର ପଦ୍ଧତି ବ୍ୟାପକ ରୂପ ଧାରଣ କରିବ କିପରି ? ସୃଜନଠାରୁ ପ୍ରସାରର ଆବଶ୍ୟକତା ଅଧିକ । ସଫଳ ପ୍ରସାର ଅଭାବରେ ଉତ୍କୃଷ୍ଟ ସୃଷ୍ଟି ସେମିତି ପଡ଼ିରହିବ । ଯୁଗ-ନିର୍ମାଣ ଯୋଜନା ଯୁଗାନୁକୂଳ ବିଚାରଧାରା ସମ୍ବଳିତ ଶସ୍ତା ସତ୍ ସାହିତ୍ୟ ସୃଷ୍ଟି କରୁଛି । ମାତ୍ର ତା'ର ପ୍ରସାରରେ ଗତିରୋଧ ଜନିବା ଅବସ୍ଥା ଉପସ୍ଥିତ ହୋଇଛି । ଲୋକମାନଙ୍କ ମନରେ ଏପରି ପ୍ରକୃତ ସାହିତ୍ୟ ପଢିବାର ରୁଚି ଏକାନ୍ତ ଅଭାବ । ସେମାନେ ଏ ପ୍ରକାର ସାହିତ୍ୟ ଚାହାନ୍ତି ନାହିଁ କି କିଣନ୍ତି ନାହିଁ । ପୁସ୍ତକ ପ୍ରକାଶକ ଓ ବିକ୍ରେତା ଏମିତି ସାହିତ୍ୟ ଛାପନ୍ତି ନାହିଁ । ସେମାନେ ଏଥିରେ ମୂଳଧନ ଲଗାଇବେ କାହିଁକି ? ଯେଉଁ ସାହିତ୍ୟର ଚାହିଦା ନାହିଁ, ବିକ୍ରି ହେବ ନାହିଁ, ତାହା ଛାପି ଜଞ୍ଜାଳ ବଢାଇବାର ମୂଲ୍ୟ କଣ ? ଯେଉଁମାନେ ଅତି ଉତ୍ସାହୀ ହୋଇ ଛାପି ଦେଉଛନ୍ତି, ସେ ସାହିତ୍ୟ ତାଙ୍କ ଗୋଦାମ ଘରେ ପଡ଼ିରହୁଛି ।

ଏପରି ପରିସ୍ଥିତିରେ ଉକ୍ତ ବିଚାରଧାରାର ସୃଜନ କେବଳ ନୁହେଁ ପ୍ରକାଶନର କଠିନ ଉତ୍ତରଦାୟିତ୍ୱ ମଧ୍ୟ ଯୁଗ-ନିର୍ମାଣ ଯୋଜନା ବହନ କରିଛି । ଏବେ ଗୋଟିଏ କଥା ବାକି ରହିଗଲା—ପ୍ରଚାର । କେବଳ ଛାପିଦେଲେ କୌଣସି ସାହିତ୍ୟର ପ୍ରଚାର ହୋଇଗଲା, ଏପରି ଚିନ୍ତା କରିବା ଅନୁଚିତ । ଏପରି ସାହିତ୍ୟ ମଗାଇ ଦୋକାନକୁ ସଜାଇବାକୁ ବା ମୂଳଧନ ଖଟାଇବାକୁ କୌଣସି ପୁସ୍ତକ ବିକ୍ରେତାଙ୍କୁ ରାଜି କରାଇବା ମଧ୍ୟ ଅସମ୍ଭବ ।

ଏପରି ଅବସ୍ଥାରେ ଏହି ଯୁଗାନୁକୂଳ ପ୍ରବଳ ପ୍ରେରଣାକୁ ଘରେ ଘରେ ପ୍ରତି ବ୍ୟକ୍ତିଙ୍କ ନିକଟରେ ପହଞ୍ଚାଇବାକୁ କେବଳ ଗୋଟିଏ ମାତ୍ର ଉପାୟ ଅଛି । ସେ ଉପାୟ ହେଉଛି—ସ୍କୁଲ ପୁସ୍ତକାଳୟ । ଯେଉଁମାନଙ୍କ ମନରେ ଦେଶ, ଧର୍ମ, ସମାଜ, ସଂସ୍କୃତି ପ୍ରତି ସହାନୁଭୂତି ରହିଛି, ଯେଉଁମାନେ ମାନବିକ ଆଦର୍ଶକୁ ଉନ୍ନତ ସ୍ତରକୁ ଆରୋହଣ କରାଇବା ପାଇଁ ଇଚ୍ଛୁକ, ଯେଉଁମାନେ ସୁନ୍ଦର ଏବଂ ସୁବ୍ୟବସ୍ଥିତ

ନର୍ବା଼ଚନ ପ୍ରତି ଆଗ୍ରହାନ୍ୱିତ, ସେପରି ବ୍ୟକ୍ତିମାନେ ନିଜର କିଛି ସମୟ ଓ ଅର୍ଥ ଏ ବାଟରେ ବ୍ୟୟ କରିପାରନ୍ତି । ଜନବିନିଂର୍ଯଠନ ଧର୍ମୀ ସାହିତ୍ୟକୁ ନିଜ ଥଳିରେ ରଖିପାରନ୍ତି, ନିଜେ ପଢ଼ି ଅନ୍ୟଙ୍କୁ ପଢ଼ାଇପାରନ୍ତି ଏବଂ ନିରକ୍ଷରମାନଙ୍କୁ ଶୁଣାଇ ପାରନ୍ତି । ନିଜର ପ୍ରଭାବର ପରିସର ମଧ୍ୟରେ ଥିବା ପଡ଼ୋଶୀ, ମିତ୍ର, ସମ୍ପର୍କୀୟ, ପରିଚିତ, ଅପରିଚିତ ସମସ୍ତଙ୍କ ନିକଟରେ ଏହି ବିଚାରଧାରା ପହଞ୍ଚାଇବାର ପ୍ରୟତ୍ନ କରିପାରନ୍ତି ବା ଓ ପଢ଼ାଇପାରନ୍ତି ।

ଏ କାମଟି ଯେତିକି ସରଳ, ସେତିକି କଠିନ । ସବୁଠାରୁ କାର୍ଯ୍ୟବ୍ୟସ୍ତ ଲୋକ କିମ୍ବା ସବୁଠାରୁ ଦରିଦ୍ରଲୋକ ଦୈନିକ ଅଧ ଘଣ୍ଟାରୁ ଘଣ୍ଟାଏ ସମୟ ଏବଂ ଦଶ ପଇସା ଖୁବ୍ ସହଜରେ ଏହି ମହତ୍ କାର୍ଯ୍ୟ ଉଦ୍ଦେଶ୍ୟରେ ବ୍ୟୟ କରିପାରନ୍ତି । ମେଳାପୀ ଏବଂ କଥା କହି ଜାଣିଥିବା ଲୋକ ନିଜର କଥା ଚତୁରତା ବା ବୁଦ୍ଧିବଳ ସାହାଯ୍ୟରେ ଅନ୍ୟକୁ ବିନା ପଇସାରେ ବହି ପଢ଼ିବାକୁ ଓ ଠିକ୍ ସମୟରେ ଫେରାଇ ଦେବାକୁ ସହଜେ ଦେଇପାରେ । ଆଜିକାଲି ଧର୍ମ ଆଡ଼କୁ ମନଦେଇ ଧର୍ମଭାବାପନ୍ନ ହେଲେ, କୌଣସି ବ୍ୟକ୍ତିଙ୍କର ପରିବାର ଲୋକ କିମ୍ବା ବନ୍ଧୁମାନେ ତାଙ୍କୁ ମୂର୍ଖ ଆଖ୍ୟା ଦେଇଥାଆନ୍ତି ଏବଂ ଥଟ୍ଟାତାମସା କରନ୍ତି । ତାସଖେଳ, ସିନେମା, ନିଶା କିମ୍ବା ବ୍ୟସନ ବାଟରେ ପଇସା ଖର୍ଚ୍ଚ କଲେ, ତାହାକୁ କେହି କିଛି କହିବେ ନାହିଁ । ମାତ୍ର ଧର୍ମ ଆଡ଼କୁ ସାମାନ୍ୟ ରୁଚି ପ୍ରଦର୍ଶନ କଲେ ସମସ୍ତଙ୍କର ଗାତ୍ରଦାହ ହୋଇଥାଏ । ନିକୃଷ୍ଟ ସ୍ତରର ସମାଜରେ ଏହାହିଁ ଆଶା କରାଯାଇ ପାରେ । ଏହି ହେଉଛି ସବ ପ୍ରଥମ ଏବଂ କଠିନ୍ତ ବାଧା । ଦ୍ୱିତୀୟ ଅସୁବିଧାଟି—ନିଜକୁ ଏକଥା ବଡ଼ ଅସୁବିଧା ଲାଗେ । କାହା ପାଖକୁ ଯାଇ ଦେଶ-ଧର୍ମ ସମ୍ବନ୍ଧରେ ଆଲୋଚନା କରିବାକୁ ସଙ୍କୋଚ ଲାଗେ । ଲୋକଙ୍କୁ ଆଜିକାଲି ଖରାପ କଥା ଭଲ ଲାଗୁଛି । ଘଣ୍ଟା ଘଣ୍ଟା ଧରି ଏପରି ଅସାର କଥା କହୁଥିଲେ, ଲୋକମାନେ ଶୁଣୁଥିବେ । ଘଣ୍ଟା ଘଣ୍ଟା ଧରି ମଉଜ ମଜଲିସ କରୁଥିବେ । ମାତ୍ର ଆଦର୍ଶ କଥା କହିଲେ, ଲୋକଙ୍କୁ ପିତା ଲାଗୁଛି । ଲୋକମାନେ ଏପରି ଆଦର୍ଶବାଦର କଥା କହୁଥିବା ବ୍ୟକ୍ତିଙ୍କୁ ବେଖାତିର କରନ୍ତି ତେଣୁ ନିଜକୁ ସଙ୍କୋଚ ଏବଂ ଲଜ୍ଜାବୋଧ ହୋଇଥାଏ । ଆହୁରି ଗୋଟିଏ ଅସୁବିଧା ଅଛି । ଲୋକମାନେ ଏଥିର ଉପଯୋଗିତା ବୁଝିପାରି ନାହାନ୍ତି କିମ୍ବା ଏପରି ପ୍ରବୃତ୍ତିପ୍ରଧ ସେମାନେ ଆକର୍ଷିତ ହୋଇ ପାରୁନାହାନ୍ତି । ସାମାନ୍ୟ ରୁଚି ନଥିଲେ, କୌଣସି ଲୋକକୁ ବିନା ପଇସାରେ ମଧ୍ୟ ଏପରି ସାହିତ୍ୟ

ପାଠ କରିବାକୁ ରାଜି କରାଯାଇ ନପାରେ । ଏହି କାରଣ ଯୋଗୁଁ କାମଟି ଯେତିକି ସହଜ, ସେତିକି କଠିନ । ଯେଉଁମାନେ ମନସ୍ୱୀ ସେମାନେ କଠିନ କାମକୁ ମଧ୍ୟ ସହଜ ମନେ କରନ୍ତି । ଦୁର୍ବଳମନା ଲୋକଙ୍କ ପକ୍ଷରେ ଅତ୍ୟନ୍ତ ସହଜ କାମ କଠିନ ପରି ପ୍ରତୀୟମାନ ହୋଇଥାଏ । ଏହା ହେଉଛି ମନୁଷ୍ୟର ମନୋଃ ଅବସ୍ଥାର କଥା । ବସ୍ତୁତଃ ସଦ୍‌ଜ୍ଞାନର ପ୍ରଶ୍ନର ଗୋଟିଏ ଅତି ସାଧା-ସିଧା କଥା— କଠିନ ନୁହେଁ, ସରଳ ବି ନୁହେଁ । ବ୍ୟକ୍ତିଗତ ଉତ୍ସାହ, ଅନୁତ୍ସାହ, ସାହସ ଏବଂ ସଂକୋଚ ଉପରେ ଏହା ନିର୍ଭର କରେ ।

ପ୍ରବୁଦ୍ଧତା ଏବଂ ବସ୍ତୁରଶୀଳତାର ପରିପ୍ରେକ୍ଷୀରେ. ଆମ୍ଭେମାନେ ବ୍ୟକ୍ତି ଏବଂ ସମାଜର ପୁନରୁତ୍ଥାନ ପାଇଁ ଅଭିଯାନରେ କେବଳ ଦର୍ଶକ ହୋଇ ନରହି, ବରଂ ସହଯୋଗ କରିବା ଉଚିତ । ଏହି ଦୃଷ୍ଟିରୁ ସ୍କୁଲ ପୁସ୍ତକାଳୟ ସବୁଠାରୁ ସରଳ ଏବଂ ସବୁଠାରୁ ପୁଣ୍ୟମୟ କାର୍ଯ୍ୟ । ଏଥିଲାଗି ଅଳ୍ପ ସମୟ ବ୍ୟୟ କରିବା ଆବଶ୍ୟକ । ଶ୍ରେଷ୍ଠ ଶ୍ରେଷ୍ଠ ପର୍ବ ପର୍ବାଣିରେ କରାଯାଉଥିବା ଧାର୍ମିକ କାର୍ଯ୍ୟରେ ହିନ୍ଦୁମାନଙ୍କ ଘରେ ଅନେକ ପଇସା ଖର୍ଚ୍ଚ ହୋଇଥାଏ । ରୋଜଗାରର ଅଧିକାଂଶ ଅର୍ଥ ଅନାବଶ୍ୟକ କାର୍ଯ୍ୟରେ ବି ଖର୍ଚ୍ଚ ହୋଇଥାଏ । ତେବେ ଏତେ ବଡ଼ ପରମାର୍ଥ କାର୍ଯ୍ୟ ପାଇଁ ନିଜ ଘରେ ନବନିର୍ମାଣ ପୁସ୍ତକାଳୟ ସ୍ଥାପନ କରିବା ଲାଗି ପ୍ରତିଦିନ ମୋଟେ ଦଶପଇସା ଜମାକରି ରଖିବା କ'ଣ ଏପରି ଗୋଟାଏ ବଡ଼ କାମ ଯାହା ସମସ୍ତଙ୍କ ଦ୍ୱାରା ହୋଇ ନ ପାରିବ ? ସେହିପରି ସତ୍ ଚିନ୍ତା ନଥିଲେ, ଗୋଟିଏ ମିନିଟ୍ ବା ଗୋଟିଏ ପଇସା ବ୍ୟୟ କରିବା କଷ୍ଟସାଧ୍ୟ । ମାତ୍ର ଭାବନାଶୀଳ ବ୍ୟକ୍ତିମାନଙ୍କ ପକ୍ଷରେ ନିଜ ପ୍ରାଣ ଏବଂ ସର୍ବସ୍ୱ ପରମାର୍ଥ ଉଦ୍ଦେଶ୍ୟରେ ସମର୍ପଣ କରିବା କିଛି ବିଚିତ୍ର ବା କଷ୍ଟସାଧ୍ୟ ନୁହେଁ ।

ଯଦି ଆମ୍ଭମାନଙ୍କର ଉଦାରତା, ଆଧ୍ୟାତ୍ମିକ ଭାବ ଏବଂ ଧର୍ମ ଚିନ୍ତା ଜାଗ୍ରତ ହୁଏ ଏବଂ ଆମ୍ଭେମାନେ ଅଳ୍ପ କିଛି ସମୟ ଓ ସହଯୋଗ ପ୍ରତିଦିନ ଲଗାଇ ପାରନ୍ତି, ତେବେ ବୁଝିବାକୁ ହେବ, ଏହି ସହଯୋଗ ଦ୍ୱାରା ଏ ଯୁଗର ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟରେ ଆମ୍ଭେମାନେ କିଛି କରିଛୁ । କେବଳ ଏତିକିରେ ନବଯୁଗ-ନିର୍ମାଣ ଦିଗରେ ଆଶାତୀତ ପ୍ରଗତିର ସମ୍ଭାବନା ରହିଛି ।

ଭିକ ମାଗିବା ଉଦ୍ଦେଶ୍ୟରେ ଆମ୍ଭେମାନେ ସ୍କୁଲ ଧରୁନାହୁଁ । ସଦ୍‌ଜ୍ଞାନ ବାଣ୍ଟିବାକୁ ଅମୃତ କଳସ ପରି ଆମେ ତାକୁ ଧରୁଛୁ । ଧନୀ ଲୋକମାନେ ମିଷ୍ଟାନ୍ନ

ଯେ ଔଷଧ ବିତରଣ କରି ଯେଉଁ ପୁଣ୍ୟ ଲାଭ କରନ୍ତି, ସଦ୍‌ଜ୍ଞାନର ଅମୃତ ବିତରଣ କରି ଆମେ ତା'ଠାରୁ ହଜାର ଗୁଣ ଅଧିକ ପୁଣ୍ୟ ଅର୍ଜନ କରିବୁ । ମନୁଷ୍ୟର ଦୁର୍ବୃତ୍ତିକୁ ଆଦର୍ଶବାଦ ଦିଗକୁ ଟାଣିନେବା ଠାରୁ ବଳି ଅଧିକ ପୁଣ୍ୟକର୍ମ ଏ ଧରଣୀରେ ନାହିଁ । ବିଶ୍ୱଶାନ୍ତି ଲାଗି କରାଯାଉଥିବା ସମସ୍ତ ଉପାୟ ମଧ୍ୟରେ ଜ୍ଞାନଦାନ ଶୀର୍ଷସ୍ଥାନ ଅଧିକାର କରେ । ଏହି ମହାନ୍ ଉଦ୍ଦେଶ୍ୟ ପୂରଣ ଲାଗି ଆମ୍ଭେମାନେ କ'ଣ ସାମାନ୍ୟ ସମୟ ଦେଇପାରିବା ନାହିଁ ? ଏ ଯୁଗର ସବୁଠାରୁ ଦୁର୍ବଳ ଏବଂ ମହାନ୍ ଯୁଗ-ନିର୍ମାଣ ଅଭିଯାନରେ କ'ଣ ଆମ୍ଭମାନଙ୍କ ପକ୍ଷରୁ କୌଣସି ସହଯୋଗ ସମ୍ଭବ ନୁହେଁ ? ଏ ପ୍ରଶ୍ନ ନିଜକୁ ନିଜେ ପଚାରିବା ଦରକାର । କାର୍ଯ୍ୟ-ବ୍ୟସ୍ତ ଥାଇ ବା ଆର୍ଥିକ ଅନାଟନ ଥାଇ, ଯଦି ଅନ୍ତରାତ୍ମା କହେ ଯେ ଏ ଦିଗରେ କିଛି କରିବା ଆବଶ୍ୟକ, ତେବେ ସବୁଠାରୁ ଶ୍ରେଷ୍ଠ ଧର୍ମକାର୍ଯ୍ୟ ଏହି ଜ୍ଞାନ ଯଜ୍ଞରେ ସହଯୋଗ କରିବା ଏକାନ୍ତ କାମ୍ୟ । ସ୍କୁଲ ପୁସ୍ତକାଳୟ ହାତରେ ଧରି ନିଜର ବନ୍ଧୁ ପରିଜନଙ୍କ ଉପରେ ଅମୃତ ବୃଷ୍ଟି ଆରମ୍ଭ କରିବା ଉଚିତ ।

## ସ୍କୁଲ ପୁସ୍ତକାଳୟର ଔଷଧ

ଜ୍ୱରର ପ୍ରକୋପ ଅଧିକ ହେଲେ ପରିପାକ କ୍ରିୟା ବନ୍ଦ ହୋଇଥାଏ କିମ୍ବା ମନ୍ଦ ହୋଇଯାଏ । ତେଣୁ କ୍ଷୁଧା ହୁଏ ନାହିଁ । ରୋଗୀକୁ ପୁଷ୍ଟିକର ଏବଂ ସ୍ୱାଦିଷ୍ଟ ଖାଦ୍ୟ ଦେଲେ ମଧ୍ୟ ସେଥିରେ ତାହାର ଅରୁଚି ହୁଏ । ଖାଇବାକୁ ମନ ହୁଏ ନାହିଁ । ତୃଷ୍ଣା ଏବଂ ବାସନାର ଜ୍ୱର ମଧ୍ୟ ଏହି ପ୍ରକାର । ଏହାର ପ୍ରକୋପ ହେଲେ ଆଧ୍ୟାତ୍ମିକ ଅଭିରୁଚି ବନ୍ଦ କିମ୍ବା ମନ୍ଦ ହୋଇଥାଏ । ଏହି ତତ୍ତ୍ୱ ଆତ୍ମା ପାଇଁ ଏକ ଅନିବାର୍ଯ୍ୟ ଆବଶ୍ୟକତା । ମାତ୍ର ମୋହଗ୍ରସ୍ତ ବ୍ୟକ୍ତିକୁ ଏହା ବ୍ୟର୍ଥ ବା ମିଥ୍ୟା ପ୍ରତୀୟମାନ ହୋଇଥାଏ । ଏ ସମ୍ବନ୍ଧରେ ପ୍ରକୃତ ଅଭିରୁଚି ଉତ୍ପନ୍ନ ହେଲେ ଏବଂ ଉତ୍କୃଷ୍ଟ ଆକାଂକ୍ଷା ଜାଗରିତ ହେଲେ, ଆତ୍ମକଲ୍ୟାଣ ଦିଗରେ କିଛି ପ୍ରଗତିର ଆଶା କରାଯାଇ ପାରେ । ଅନେକ ପ୍ରରୋଚନା ପରେ, କେହି କୌଣସି ଲୋଭ ଦେଖାଇଲେ, କୌଣସି ପ୍ରକାରେ ଯଦି କିଛି କ୍ରିୟା ଆରମ୍ଭ କରାଯାଏ, ଅନ୍ତଃ-ପ୍ରେରଣା ଅଭାବରୁ ତାହା ବାଲିବନ୍ଧ ପରି ଭୁଷୁଡ଼ି ପଡ଼ିଥାଏ । ଦେଖିବାକୁ ମିଳେ, ଅଧିକାଂଶ ବ୍ୟକ୍ତି କ୍ଷଣିକ ଭାବାବେଶରେ କୌଣସି ପ୍ରକାରେ କିଛି ଆଧ୍ୟାତ୍ମିକ ପ୍ରଯତ୍ନ ଆରମ୍ଭ କରିଦେଇ ଥା'ନ୍ତି । ମାତ୍ର ଅଳ୍ପ ସମୟ ପରେ ତାହାର ସମାପ୍ତି ଘଟିଥାଏ । ଜ୍ୱର କ୍ଷେତ୍ରରେ କ୍ଷୁଧା ନ ହେବା ଯାହା, ଏ କ୍ଷେତ୍ରରେ ଆନ୍ତରିକ ଅଭିରୁଚି ନଥିବା

ମଧ୍ୟ ତାହା ।

ବେଦାନ୍ତ ଦର୍ଶନର ପ୍ରଥମ ସୂତ୍ର ହେଲା "ଅଥାତୋ ବ୍ରହ୍ମ ଜିଜ୍ଞାସା"— ଅର୍ଥାତ୍ ଆତ୍ମିକ ପ୍ରଗତିର ପ୍ରଥମ ସୋପାନ ହେଲା ଜିଜ୍ଞାସାର ପ୍ରବଳ ଇଚ୍ଛା ।" ଏହା ହେଉଛି କୌଣସି ବିଷୟରେ ଜାଣିବା ପାଇଁ ପ୍ରବଳ ଇଚ୍ଛା । ଏହି ପ୍ରଥମ ସର୍ତ୍ତ ପୂରଣ ହୋଇଗଲେ, ପ୍ରଗତିର ପ୍ରଥମ ଦ୍ୱାର ଉନ୍ମୁକ୍ତ ହୋଇଥାଏ । ଖାଲି ଆଧ୍ୟାତ୍ମିକ ବିଷୟରେ ନୁହେଁ, ସଂସାରର ଯେ କୌଣସି ଦିଗରେ ପ୍ରଗତିର ଆଧାର ହେଲା ସେହି ବିଷୟରେ ଜାଣିବା ଓ ଜ୍ଞାନ ଲାଭ କରିବାର ପ୍ରବଳ ଆକାଙ୍କ୍ଷା । ଅଧା ମନରେ, ନିଷ୍ଠାହୀନ ଭାବରେ, ବେଠି ଖଟିବା ପରି, ବୋଝ ବୋଲି ମନେ କରି ଯେଉଁ କାମ କରାଯାଏ, ତାହା କେବେହେଲେ ଫଳବତୀ ହୋଇ ନଥାଏ ।

ଏ ଯୁଗରେ ସବୁଠାରୁ ବେଶୀ ବିପତ୍ତି ଆସିଛି ବିବେକ ଉପରେ । ଲୋକମାନଙ୍କ ମନୋଭୂମିରେ କୁଚିନ୍ତା ବଢ଼ୁଛି । ନିକୃଷ୍ଟ ଚିନ୍ତା ଏବଂ କଦର୍ଯ୍ୟ ଆଦର୍ଶ, ସ୍ୱଭାବ ଓ ଚରିତ୍ରର ଏକ ଅଙ୍ଗସଦୃଶ ହୋଇଛି । ଅବାଞ୍ଛନୀୟ ଗତିବିଧି ଅଭ୍ୟାସରେ ପରିଣତ ହୋଇଛି । ବ୍ୟକ୍ତି ତଥା ସମାଜରେ ଅଧଃପତନର କାରଣ ହେଉଛି ଏହି ଗୁଡ଼ିକ । ଏହି ହେତୁରୁ ଅଗଣିତ ସମସ୍ୟା, ଦୁଃଖ କଷ୍ଟ, ଅସୁବିଧାର ଜନ୍ମ ଏବଂ ବୃଦ୍ଧି ଘଟୁଛି । ଲୋକମାନେ ପ୍ରତି କଥାକୁ ବିବେକପୂର୍ଣ୍ଣ ଦୃଷ୍ଟିକୋଣ ନେଇ ଦେଖିଲେ ଏବଂ ଯାହା ଉଚିତ ତାହାହିଁ ଗ୍ରହଣ କଲେ, ଆମ୍ଭେମାନେ ଦିବ୍ୟଜୀବନ ଲାଭର ପରିସ୍ଥିତିରେ ଉପନୀତ ହୋଇ ପାରିବୁ ଏବଂ ସମସ୍ୟା ଗୁଡ଼ିକ ଧୂଆଁ ପରି ଆକାଶରେ ଅନ୍ତର୍ହିତ ହୋଇଯିବ । ଏହାହିଁ ଏ ଯୁଗର ସବୁଠାରୁ ଶ୍ରେଷ୍ଠ ଆବଶ୍ୟକତା । ଅଜ୍ଞାନ ଅନ୍ଧକାର ଦୂରୀଭୂତ ହେଲେ, ଜୀବନରେ ଅଭାବ ଅସୁବିଧା ଭୋଗ କରିବାକୁ ପଡ଼ିବ ନାହିଁ ।

ଆମ ମସ୍ତିଷ୍କରେ ଜାଣି ନା ଜାଣି ବିଚାର ସବୁବେଳେ ଚାଲିଥାଏ । ମସ୍ତିଷ୍କ ନିଷ୍କ୍ରିୟ ହୋଇ ରହିବା ଅସମ୍ଭବ । ସଙ୍କଟ ଉତ୍ପନ୍ନ କରିବା ଭଳି କୁବିଚାର ଏବଂ ଅବାଞ୍ଛନୀୟ ଚିନ୍ତା ଦୂର କରିବାକୁ ହେଲେ ସେ ସ୍ଥାନରେ ସଦ୍‌ବିଚାର ଏବଂ ଆଦର୍ଶଯୁକ୍ତ ନିଷ୍ଠାକୁ ପ୍ରତିଷ୍ଠିତ କରିବା ପ୍ରୟୋଜନ । ବସ୍ତୁତଃ ଏହି ପରିବର୍ତ୍ତନ ହିଁ ଯୁଗ ପରିବର୍ତ୍ତନ । ପ୍ରାଚୀନ କାଳରେ ସାଧୁ ଓ ବ୍ରାହ୍ମଣମାନେ ଏହାହିଁ କରୁଥିଲେ । ତପସ୍ୟା, ସଂଯମ ଏବଂ ସାଧନା ଦ୍ୱାରା ନିଜର ବ୍ୟକ୍ତିତ୍ୱକୁ ନିର୍ମଳ ଏବଂ ତେଜୋମୟ କରିବା ସଙ୍ଗେ ସଙ୍ଗେ, ସେମାନେ ଲୋକମଙ୍ଗଳ ରୂପକ ଧର୍ମ କାର୍ଯ୍ୟରେ ପ୍ରବୃତ୍ତ

ହେଉଥିଲେ । ମନୁଷ୍ୟର ସବୁଠାରୁ ବଡ଼ ସେବା ହେଉଛି ବିଚାର ଶୁଦ୍ଧି । କାହାର ଦୁଃଖ ଦାରିଦ୍ର୍ୟର କ୍ଷଣିକ ନିବାରଣ ଉଦ୍ଦେଶ୍ୟରେ ସାମୟିକ ସାହାଯ୍ୟ ଆକାରରେ କୌଣସି କିଛି ଦାନ କରାଯାଇ ପାରେ । ମାତ୍ର ବିଚାର ବୁଦ୍ଧି ଉତ୍ପନ୍ନ କରି ପାରିଲେ ତା'ର ଦୁଃଖ ସବୁଦିନ ପାଇଁ ନିରାକରଣ ହେବା ସମ୍ଭବ । କୁଚିନ୍ତା ସମସ୍ତ ଦୁଃଖ କଷ୍ଟ ଉତ୍ପନ୍ନ କରିଥାଏ—ଏହା ଏକ ସୁଚିନ୍ତିତ ତଥ୍ୟ । ସଦ୍‌ବିଚାର ଦ୍ୱାରା ସୁଖ-ଶାନ୍ତିର ମୂଳଦୁଆ ପଡ଼ିଥାଏ । କୌଣସି ବ୍ୟକ୍ତିକୁ ଅନୁପଯୁକ୍ତ କାର୍ଯ୍ୟରୁ ବିରତ କରି ତାଙ୍କ ଅନ୍ତଃକରଣରେ ସୁଚିନ୍ତା ପ୍ରତି ଆସ୍ଥା ସୃଷ୍ଟି କରାଇବା ହିଁ ସବୁଠାରୁ ଶ୍ରେଷ୍ଠ ପରୋପକାର । ତେଣୁ ପ୍ରାଚୀନ କାଳର ସାଧୁ ବ୍ରାହ୍ମଣମାନେ ବିଶ୍ୱଶାନ୍ତିର ଏହି ଆବଶ୍ୟକତାକୁ ପୂର୍ତ୍ତି କରିବା ପାଇଁ ଘରେ ଘରେ ସଦ୍‌ବିଚାରର ଧ୍ୱନି ପହଞ୍ଚାଉ ଥିଲେ । ଦେଶବାସୀଙ୍କର ମନକୁ ଶୁଦ୍ଧ କରିବା ପାଇଁ ସେମାନଙ୍କ ଅନ୍ତର ପ୍ରଦେଶରେ ଧର୍ମ ଏବଂ ଆଧ୍ୟାତ୍ମବାଦର ଜ୍ୟୋତି ପ୍ରଜ୍ୱଳିତ କରୁଥିଲେ ।

ଆମେ ଏହି ପବିତ୍ର ଆବଶ୍ୟକତାକୁ ପୁନରୁଜ୍ଜୀବିତ କରିବା । ପ୍ରତ୍ୟେକ ବ୍ୟକ୍ତି ସାଧୁ ବା ବ୍ରାହ୍ମଣ ନ ହୋଇ ପାରନ୍ତି କିମ୍ବା ପ୍ରାଚୀନ କାଳର ମୁନି ଋଷିମାନଙ୍କ ପରି ଅନ୍ତଃକରଣ ସ୍ପର୍ଶ କରୁଥିବା ସାରଗର୍ଭିକ ଉପଦେଶ ନ ଦେଇପାରନ୍ତି । ମାତ୍ର ଯେକୌଣସି ସାଧାରଣ ବ୍ୟକ୍ତି ଅତି ସହଜ ଉପାୟରେ ଏହି ମହାନ୍ ସତ୍‌କର୍ମ ସମ୍ପାଦନ କରିପାରେ । ଯୁଗ-ନିର୍ମାଣ ଯୋଜନା ଅନ୍ତର୍ଗତ ବିଚାରକ୍ରାନ୍ତିର ଉଦ୍ଦେଶ୍ୟରେ ଲେଖାଯାଇଛି ଯେ ଶସ୍ତା-ସାହିତ୍ୟର ପ୍ରତ୍ୟେକ ଧାଡ଼ିରେ ଋଷିମାନଙ୍କର ଜ୍ଞାନ, ଅଭିଜ୍ଞତା, ପ୍ରବଚନ ଏବଂ ମାର୍ଗ-ଦର୍ଶନ ସାଙ୍ଗୋପାଙ୍ଗ ଭାବରେ ନିବିଷ୍ଟ ହୋଇଛି । ସେଥିରେ ଅନୁରୂପ ସାମର୍ଥ୍ୟ ମଧ୍ୟ ଅଛି । ସେ ସବୁ ପାଠ କରୁଥିବା ବ୍ୟକ୍ତିର ବିଚାରଧାରା ଉପରେ ଏ ସାହିତ୍ୟ ଉପଯୁକ୍ତ ପ୍ରଭାବ ପକାଇ, ଚିନ୍ତାଧାରାକୁ ସତ୍‌ମାର୍ଗଗାମୀ କରାଇପାରେ । ଲୋକମାନଙ୍କୁ ଏହି ସାହିତ୍ୟ ସହିତ ପରିଚିତ କରାଇପାରିଲେ, ସେମାନଙ୍କ ମନରେ ଏଥିପ୍ରତି ଶ୍ରଦ୍ଧାଭାବ ଜାଗ୍ରତ କରାଇଲେ, ଯୁଗ ପରିବର୍ତ୍ତନର ଭିତ୍ତି ସ୍ଥାପନ ଆରମ୍ଭ ହେଲା ବୋଲି ବୁଝିବାକୁ ହେବ । ପ୍ରାଚୀନ କାଳରେ ସାଧୁ ସନ୍ଥଗଣ ନିଜର ଅମୂଲ୍ୟ ଜୀବନ ଉତ୍ସର୍ଗ କରି ଯେଉଁ ମହତ୍ ଉଦ୍ଦେଶ୍ୟ ସାଧନ କରୁଥିଲେ, "ସ୍କୁଲ ପୁସ୍ତକାଳୟ" ଆନ୍ଦୋଳନ ମାଧ୍ୟମରେ ତାହା ହୋଇପାରିବ । ପ୍ରତ୍ୟେକ ବ୍ୟକ୍ତି ହୁଏତ ସେତିକି ମହାନ୍ ନ ହୋଇପାରନ୍ତି ମାତ୍ର ଗୋଟିଏ "ସ୍କୁଲ ପୁସ୍ତକାଳୟ" ପ୍ରଚଳନ କଲେ ତାଙ୍କର ଉଦ୍ଦେଶ୍ୟ ପୂର୍ତ୍ତି

ହୋଇ ପାରିବ ।

ଅତ୍ୟନ୍ତ ଆନନ୍ଦର କଥା, ଅଞ୍ଚଳ ଜେ୍ୟାଠର ପରିଜନମାନେ ଝୁଲ ପୁସ୍ତକାଳୟର ମହତ୍ତ୍ୱ ହୃଦୟଙ୍ଗମ କରି ପାରିଛନ୍ତି । ସେମାନେ ନିଷ୍ଠାର ସହିତ ଏହି ମହାନ୍ ଧର୍ମ କାର୍ଯ୍ୟକୁ ପରିଚାଳିତ କରୁଛନ୍ତି । କାର୍ଯ୍ୟ ଦୃଷ୍ଟିରୁ ଦେଖିବାକୁ ଗଲେ, ଏହା ସେପରି କିଛି କଷ୍ଟକର ନୁହେଁ । ଶିକ୍ଷିତ ଲୋକମାନେ ହାତରେ କପଡ଼ାର କିମ୍ବା ପ୍ଲାଷ୍ଟିକ୍ ଥଳୀ ଧରିଥାନ୍ତି । ଏହି ଝୁଲ ଶିକ୍ଷାର ସୂଚନା । ଲୋକ-ମାନେ ସେଥିରେ ଆବଶ୍ୟକୀୟ କାଗଜପତ୍ର ରଖିଥା'ନ୍ତି । ଏବେ ତ ଏପରି ସୁନ୍ଦର ସୁନ୍ଦର ଝୁଲ ଆସିଲାଣି ଯେ, ତାହାକୁ କାନ୍ଧରେ ଝୁଲାଇଲେ କିମ୍ବା ହାତରେ ଧରିଲେ ସୌନ୍ଦର୍ଯ୍ୟ ବଢ଼ୁଛି । ସାଥିରେ ଏମିତି ଗୋଟିଏ ଝୁଲ ରଖି, ସେଥିରେ କୋଡ଼ିଏ ତିରିଶଟି ଶ୍ରେଷ୍ଠ ଶ୍ରେଷ୍ଠ ପୁସ୍ତିକା ରଖି ପାରିଲେ, ଏହାର ଓଜନ ସେପରି କିଛି ବେଶୀ ହୋଇଯିବ ନାହିଁ କିମ୍ବା କିଛି କଷ୍ଟକର ବୋଧ ହେବ ନାହିଁ ।

କାମ କରିହୁଏ ବାହାରେ । ଆମେ ଯେଉଁଠାକୁ କାମ କରିବାକୁ ଯାଉଁ, ସେଠାରେ ସାଙ୍ଗସାଥୀମାନଙ୍କ ସହ କିମ୍ବା ସେହି କାମ ସମ୍ବନ୍ଧୀୟ ବ୍ୟକ୍ତିମାନଙ୍କ ସହ ସମ୍ପର୍କ ସ୍ଥାପନ ହୁଏ । ଯେଉଁମାନଙ୍କ ସହ ସମ୍ପର୍କ ହୁଏ, ସେମାନଙ୍କ ସହିତ କାମ ବ୍ୟତୀତ ଅନ୍ୟ ବିଷୟରେ ମଧ୍ୟ କଥାବାର୍ତ୍ତା ହୋଇଥାଏ । ଏହିପରି ଆଳାପ ସମୟରେ ପ୍ରସଙ୍ଗକ୍ରମେ ଯୁଗ ନିର୍ମାଣ ବିଚାରଧାରାର ଆଲୋଚନା କରି ପାରିଲେ, ଆଳାପର ଆନନ୍ଦ ବଢ଼େ—କମ୍ ହୁଏନାହିଁ । ନିଜର ଜ୍ଞାନ ଓ ମହତ୍ ଭାବର ପ୍ରଭାବ ଅନ୍ୟ ଉପରେ ପଡ଼ିଥାଏ ଏବଂ ଏହି ପ୍ରକାର ବିଚାରଧାରାର ଆଲୋଚନା କରୁଥିବା ଲୋକକୁ ସମସ୍ତେ ବିଚାରଶୀଳ ଓ ବିଜ୍ଞ ବୋଲି ସ୍ୱୀକାର କରିଥାନ୍ତି ।

ଯେଉଁ ବିଷୟର ପୁସ୍ତିକା ନିଜ ଝୁଲରେ ଥିବ, ଆଳାପ ସମୟରେ ସେହି ବିଷୟର ଆଲୋଚନା ଅବତାରଣା କରିବା ଉଚିତ । ଆଲୋଚନା ଅଗ୍ରସର ହେବା କାଳରେ ନିଜର ସାଥୀ ସେଥିରେ ଅରୁଚି ପ୍ରକାଶ କଲେ ତାଙ୍କୁ କହିବା ଦରକାର ଯେ, ସେହି ବିଷୟରେ ଖଣ୍ଡେ ମହତ୍ତ୍ୱପୂର୍ଣ୍ଣ ପୁସ୍ତିକା ନିଜ ପାଖରେ ଅଛି । ସେ ଯଦି ପୁସ୍ତିକାଟିକୁ ମନଯୋଗ ସହ ପଢ଼ି ଫେରାଇ ଦେବାକୁ ରାଜି ହୁଅନ୍ତି, ତେବେ ତତ୍କ୍ଷଣାତ୍ ତାହା ତାଙ୍କୁ ମିଳିପାରେ । ଆଗ୍ରହ ପ୍ରକାଶ କଲେ, ତାଙ୍କୁ ଆଲୋଚନା ସମ୍ପର୍କୀୟ ବିଷୟ ସମ୍ବଳିତ ପୁସ୍ତିକା ଦେଇ, ବିବରଣୀ ଲେଖି ରଖିଥିବା ଖାତାରେ ଏ ବିଷୟ ଲେଖିଦେବା ଉଚିତ । ଏହିପରି ଭାବରେ ସାବଧାନ

ମଧ୍ୟରେ ଯେଉଁ ବନ୍ଧୁମାନଙ୍କ ମଧ୍ୟ ଆଲୋଚନା ହୁଏ ଓ ଯେଉଁମାନେ ଆଗ୍ରହ ପ୍ରକାଶ କରିଥାନ୍ତି, ସେମାନଙ୍କୁ ପୁସ୍ତିକାମାନ ଦିଆଯାଇ ପାରେ ଓ ଦୁଇ ତିନ ଦିନ ପରେ ସେଗୁଡ଼ିକୁ ଫେରାଇ ନେବାପାଇଁ ଅନୁରୋଧ କରାଯାଇ ପାରେ । ଏହି କ୍ରମ ଗ୍ଭଲୁ ରହିଲେ, ଲୋକମାନଙ୍କ ମନରେ ଏପରି ସାହିତ୍ୟ ପାଠ କରିବା ଲଗି ଆଗ୍ରହ ଉତ୍ପନ୍ନ ହେବ ଏବଂ ପରେ ସେମାନେ ନିଜେ ନିଜେ ଏପରି ପୁସ୍ତିକା ମାଗିନେଇ ପଢ଼ିବେ ।

କୌଣସି କାମ ନୂଆ ନୂଆ କଲାବେଳେ, ଦୁଇଚାରି ଦିନ ସାମାନ୍ୟ ଅସୁବିଧା ଲାଗେ । ସଂକୋଚ ଆସେ । ଅନ୍ୟମାନେ ଏହାଦେଖି କ'ଣ ଭାବିବେ, କ'ଣ କହିବେ, ଏମିତି ଗୋଟାଏ ଡର ବି ଥାଏ । ଏପରି ବି ମନେହୁଏ—ନିଜର ସାମାଜିକ ସମ୍ପର୍କରେ ଆଘାତ ଲାଗିବ କି, କେହି ଉପହାସ କରିବ କି ? ମାତ୍ର ବାସ୍ତବ କ୍ଷେତ୍ରରେ ଦେଖାଯାଏ, ସେମିତି କିଛି ହୁଏ ନାହିଁ । ଏପରି ଆଶଙ୍କା ଅମୂଳକ ବୋଲି ପ୍ରମାଣିତ ହୋଇଛି । ବିଷୟର ଆଲୋଚନା ଠିକ୍ ଭାବରେ କରାଗଲେ, ଆଲୋଚକ ବୁଦ୍ଧିମାନ ଥିଲେ ଏବଂ ଆଲୋଚନାରେ ଅଂଶ ଗ୍ରହଣ କରୁଥିବା ଅନ୍ୟ ବନ୍ଧୁମାନଙ୍କର ମନୋଭୂମି, ପ୍ରକୃତି ଇତ୍ୟାଦି ଅନୁଧ୍ୟାନ ପୂର୍ବକ ଅନୁକୂଳ ପ୍ରସଙ୍ଗରେ ଆଲୋଚନା କଲେ, ନିଶ୍ଚୟ ଲକ୍ଷ୍ୟ ସାଧନ ହେବ । ସାମୟିକ ସମସ୍ୟା ସମ୍ବନ୍ଧୀୟ ସାହିତ୍ୟ ପାଠ କରିବାଠାରୁ ଆରମ୍ଭ କଲେ, ସେ ନବ-ନିର୍ମାଣ ବିଚାରଧାରାର ସମସ୍ତ ବିଷୟ ପାଠ କରିବାକୁ ଶାନ୍ତ ହେବେ ।

ଆଲୋଚନାରେ ଅଂଶ ଗ୍ରହଣ କରୁଥିବା ବ୍ୟକ୍ତିମାନଙ୍କର ପ୍ରକୃତି ଭିନ୍ନ ହେଲେ ଏବଂ ସେମାନଙ୍କ ହାତରେ ଅପ୍ରାସଙ୍ଗିକ ବିଷୟ ସମ୍ବଳିତ ସାହିତ୍ୟ ପଡ଼ିଲେ, ଏହି ବିଚାରଧାରାର ଉପେକ୍ଷା ହୋଇପାରେ । ତାଙ୍କର ଚିନ୍ତାଧାରା ଅନୁକୂଳ ନ ହେଲେ, ଏ କ୍ଷେତ୍ରରେ ତାଙ୍କୁ ତ୍ୟାଗ କରାଯାଇ ପାରେ । ପୂର୍ବରୁ କୌଣସି ଆଲୋଚନା ନ କରି, ଔଦ୍ଧତ୍ୟ ବିଜ୍ଞାପନ ପରି କାହା ହାତରେ ଏ ସମ୍ବନ୍ଧୀୟ ପୁସ୍ତକ ଦେଇଦେଲେ, ଫଳରେ ନିଶ୍ଚୟ ନୈରାଶ୍ୟଜନକ ହେବ । ଆଜିକାଲି ପ୍ରତ୍ୟେକ ବ୍ୟକ୍ତି ଯାହା କରୁଛନ୍ତି, ସେଥିରେ ସେମାନଙ୍କର ସ୍ୱାର୍ଥ ଜଡ଼ିତ ରହୁଛି । ଅନ୍ୟର ଅନୁରୋଧ ପଛରେ ସେହି ବ୍ୟକ୍ତିଙ୍କର ସ୍ୱାର୍ଥ ଥାଇପାରେ ବୋଲି ସନ୍ଦେହ ହେବା ସ୍ୱାଭାବିକ । ପୂର୍ବରୁ କୌଣସି ଭୂମିକା ବା ଆଲୋଚନା ନକରି ହଠାତ୍ କାହାକୁ ଖଣ୍ଡେ ଦୁଇଖଣ୍ଡ ପୁସ୍ତକ ଦେଇଦେଲେ, ସେ ଲୋକ ଏହାକୁ ବନ୍ଦ କରିବାର

ପୂର୍ବାଭାସ ବୋଲି ସନ୍ଦେହ କରିପାରେ ଏବଂ ଭବିଷ୍ୟତରେ ବହିର ମୂଲ୍ୟ ଦେବାର ଆଶଙ୍କା ମଧ୍ୟ କରିପାରେ । ଏପରି ଚିନ୍ତାକରି ସେ ପୁସ୍ତକ ପାଠ କରିବାକୁ ଆଗ୍ରହ ପ୍ରକାଶ କରି ନ ପାରେ କିମ୍ବା ପୁସ୍ତକ ନେଇଗଲେ ପୁଣି, ଫେରିବାର ସମୟ ନାହିଁ ବୋଲି କହି ଫେରାଇ ଦେଇପାରେ । କୌଣସି ଅପ୍ରତ୍ୟାଶିତ ବ୍ୟୟରୁ ମୁକ୍ତ ରହିବାହିଁ ତାଙ୍କର ଅଭିପ୍ରାୟ । ଏହି ପ୍ରକାର ପରିସ୍ଥିତିର ଆଶଙ୍କାକୁ ମୂଳରୁ ନଷ୍ଟ କରିଦେବା ଦରକାର ଏବଂ ନିଜର ଉଦ୍ଦେଶ୍ୟ ଠିକ୍ ଭାବରେ ଆରମ୍ଭରୁ ବୁଝାଇ-ଦେଲେ, ଉପେକ୍ଷାର ଆଶଙ୍କା ମୋଟେ ରହି ନପାରେ ।

ରୁଚିର ନିର୍ମାଣ ଆନ୍ଦୋଳନର ପ୍ରଥମ ସୋପାନ ହେଲା ଜୀବନ ସାହିତ୍ୟ ପ୍ରତି ଲୋକମାନଙ୍କ ମନରେ ଆଗ୍ରହ ଉତ୍ପନ୍ନ କରାଇବା । ପୂର୍ବରୁ କୁହାଯାଇଛି ଜ୍ୱରଗ୍ରସ୍ତ ରୋଗୀର କ୍ଷୁଧା ବିକାର ଜନ୍ମିଥାଏ । ଆମ୍ଭମାନଙ୍କ ମନୋଭୂମି ଉପରେ କାମନା ଓ ବାସନାର ଆବରଣ ଏପରି ସଘନ ଯେ, ତୃଷ୍ଣାସ୍ତ କାମ ପାଇଁ ଇଚ୍ଛା ଉତ୍ପନ୍ନ ହୋଇପାରେ ନାହିଁ । ଏପରି ଅରୁଚିର ଅନ୍ୟତମ କାରଣ ହେଉଛି ଅଶିକ୍ଷା । ଆମ ଦେଶରେ ଶତକଡ଼ା ୮୦ ଜଣ ନିରକ୍ଷର । ବାକି ଯେଉଁ ଶତକଡ଼ା ୨୦ ଜଣ ରହିଲେ, ସେମାନେ ସ୍କୁଲ ଛାଡ଼ିଲା ପରେ ନିଜର ଜୀବିକା ସମ୍ବନ୍ଧୀୟ ଲେଖାପଢ଼ା ବ୍ୟତୀତ ଅନ୍ୟ କୌଣସି ବିଷୟ ପଢ଼ିବାର ଆଗ୍ରହ ରଖିଲେ ନାହିଁ । ସମସ୍ତ ସମୟରେ ସେମାନେ ଅନ୍ୟ କିଛି ବିଷୟ ପଢ଼ିଥା'ନ୍ତି । ସେଥିରେ ମନୁଷ୍ୟର ପଶୁତ୍ୱ ଦେଖି ବା ପଢ଼ି ଆନନ୍ଦ ପାଇଥାନ୍ତି । ଏପରି ଲୋକ ଯୌନ ବା ଅପରାଧମୂଳକ ସାହିତ୍ୟ ବା ମନୋରଞ୍ଜନ ଉଦ୍ଦେଶ୍ୟରେ ସାହିତ୍ୟ ପାଠ କରିଥା'ନ୍ତି ।

ପୁସ୍ତକ ବିକ୍ରେତାଙ୍କ ଦୋକାନରେ ଅଶ୍ଳୀଳ ଉପନ୍ୟାସ, କଳଙ୍କିତ ଗଳ୍ପ, କାହାଣୀ, କୋକଶାସ୍ତ୍ର, ଇନ୍ଦ୍ରଜାଲ, ଗୋଇନ୍ଦା ଗଳ୍ପ, ଚଳଚ୍ଚିତ୍ର ସମ୍ପର୍କୀୟ ଶସ୍ତା ସାହିତ୍ୟ, କଳ୍ପନାରେ ଉନ୍ମତ୍ତ ଉଦ୍ବେଗ କରିବା ସାହିତ୍ୟ ଶତକଡ଼ା ୯୦ ଭାଗ ମିଳିଥାଏ । ଲୋକମାନେ ବାଧ୍ୟ ହୋଇ ଏହିପରି କଦର୍ଯ୍ୟ ପୁସ୍ତକମାନ ପାଠ କରିଥା'ନ୍ତି । ବ୍ୟକ୍ତି ତଥା ସମାଜର କଲ୍ୟାଣ ସମ୍ପର୍କରେ କିମ୍ବା ସମାଜର କଠିନ ସମସ୍ୟାମାନ ସମାଧାନ କରିବା ଯୋଗ୍ୟ ପୁସ୍ତକ ବଜାରରେ ମିଳେ ନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ । ଯେଉଁ ପ୍ରକାଶକ ଏପରି ପୁସ୍ତକ ଛାପି ଥା'ନ୍ତି, ତାହା ବିକ୍ରି ନ ହେବା ଯୋଗୁଁ ତାଙ୍କର ଉତ୍ସାହ ଅଙ୍କୁରରେ ହିଁ ମରିଯାଏ ଏବଂ ଭବିଷ୍ୟତରେ ଏପରି ସାହିତ୍ୟ ପ୍ରକାଶ କରିବାକୁ ତାଙ୍କର ସାହସ ହୁଏ ନାହିଁ ।

ଜନ-ସାଧାରଣଙ୍କର ସମସ୍ୟାସବୁ ସମାଧାନ କରିବାକୁ, ସମାଜକୁ ଉନ୍ନତ ସ୍ତରକୁ ଉଠାଇବାକୁ, ଚିନ୍ତାଧାରାର ପରିବର୍ତ୍ତନ କରିବାକୁ, ସେ ଦିଗରେ ପଥ ପ୍ରଦର୍ଶନ କରିବା ପରି ସାହିତ୍ୟର ଉପଯୋଗିତା ରହିଛି ବୋଲି ଏ ଯୁଗର ଶିକ୍ଷିତ ଶ୍ରେଣୀ ଅନୁଭବ କରିନାହାନ୍ତି । ଏପରି ଅବସ୍ଥାରେ ଯେ ପ୍ରେରଣାପ୍ରଦ ସାହିତ୍ୟ ଉପେକ୍ଷିତ ହେଉଛି ସେ ସାହିତ୍ୟରୁ ମିଳୁଥିବା ଉପକାରରୁ ସମାଜ ବଞ୍ଚିତ ହେଉଛି, ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? ଦେଶର ଶିକ୍ଷିତ ସମାଜ ଜୀବନ-ସାହିତ୍ୟର ଉପଯୋଗିତା ଓ ସ୍ୱରୂପ ଯଦି ବୁଝି ନ ପାରିଲେ, ତେବେ ଏପରି ନୀରସ ବିଷୟରେ ରୁଚି ଉତ୍ପନ୍ନ କରାଇବ କିଏ ? ଆମ୍ଭମାନଙ୍କୁ ଏହିଠାରୁ କାର୍ଯ୍ୟ ଆରମ୍ଭ କରିବାକୁ ହେବ । ସ୍କୁଲ ପୁସ୍ତକାଳୟ ଏହି ଆବଶ୍ୟକତା ପୂରଣ କରିବାରେ ସମର୍ଥ । ଲୋକମାନେ ଅର୍ଥ ବ୍ୟୟ କରି ପୁସ୍ତକ ଖରିଦ କରିବାକୁ ଇଚ୍ଛୁକ ହୋଇ ନଥା'ନ୍ତି । ସ୍କୁଲ ପୁସ୍ତକାଳୟ ଏହି ଅସୁବିଧା ଦୂର କରିବ । ଏହା ପରେ ଆଉ ଅସୁବିଧା ରହିଲା— ଅରୁଚି ଓ ଅନିଚ୍ଛା । ଏହି ଦୁଇଟି ଅସୁବିଧା ଦୂର କରି ପାରିଲେ, କାମର ଅର୍ଦ୍ଧାଂଶ ପୂରଣ ହୋଇଗଲା ବୋଲି ମନେ କରିବାକୁ ହେବ ।

ନିଜ ସଂପର୍କରେ ଆସୁଥିବା ଶିକ୍ଷିତ ଲୋକମାନଙ୍କୁ ପ୍ରଥମେ ପରୀକ୍ଷା କରି ଦେଖିବାକୁ ହେବ ଯେ ସେମାନଙ୍କ ମନରେ ବିଚାରଶୀଳତାର ସ୍ଥିତି ଅଛି କି ନାହିଁ । ଯେଉଁମାନେ ଖାଇବା ଓ ପିନ୍ଧିବା କଥା ବ୍ୟତୀତ ଅନ୍ୟ ବିଷୟ ଚିନ୍ତା କରିଥା'ନ୍ତି, ଅନ୍ୟ ବିଷୟରେ ସାଧାରଣତଃ ଆଳାପ ଆଲୋଚନା କରିଥା'ନ୍ତି, ସେମାନଙ୍କଠାରୁ କିଛି ଆଶା କରାଯାଇ ପାରେ । ସେମାନଙ୍କ ନାମ ଲେଖିରଖି, ତାଙ୍କର ପ୍ରକୃତି, ଆବଶ୍ୟକତା ଓ ରୁଚି ଅନୁକୂଳ ସାହିତ୍ୟ ସେମାନଙ୍କୁ ଦେବା ଦରକାର । ଜ୍ୟୋତିଷ, ହସ୍ତରେଖା ବିଶେଷଜ୍ଞ ବୋଲାଉଥିବା ଠକମାନେ ଅନ୍ୟମାନଙ୍କ ମନକଥା ଜାଣି ପାରିବାରେ ବିଶେଷ ପଟୁ । ଠିକ୍ ସେହିମାନଙ୍କ ପରି ଆମ୍ଭେମାନେ ମଧ୍ୟ ଲୋକ ବାଛିନେବା ଉଚିତ । ନିଜ ପାଖରେ ଥିବା ପୁସ୍ତକଗୁଡ଼ିକୁ ଭଲ ଭାବରେ ଅଧ୍ୟୟନ କରି ପାରିଲେ, ସେମାନଙ୍କ ପାଇଁ କି ପ୍ରକାର ପୁସ୍ତକର ଉପଯୋଗିତା ରହିଛି, ତାହା ଜାଣିହେବ । ରୁଚି ଉତ୍ପନ୍ନ କରାଉଥିବା ଲୋକମାନଙ୍କ ମଧ୍ୟରେ ଧୈର୍ଯ୍ୟ ଓ ବୁଦ୍ଧି ଖଟାଇବାକୁ ଖୁବ୍ କରିଥା'ନ୍ତି ।

ଯେଉଁ କଳନୀ ପଦ୍ଧତି ଆଜିକୁ ପଚିଶ ବର୍ଷ ପୂର୍ବେ ଲୋକମାନେ ପରିଚିତ ନଥିଲେ, ତାହାକୁ ବ୍ୟବହାର କରିବା ପାଇଁ ନାନା ଆଶଙ୍କା ପ୍ରକାଶ କରୁଥିଲେ,

ବ୍ୟବସାୟୀମାନେ ସେହି ଜିନିଷମାନଙ୍କର ମନ୍ଦ ଅଭ୍ୟାସ ଲୋକମାନଙ୍କ ଭିତରେ ଏପରି ଭାବରେ ସୃଷ୍ଟି କରି ପାରନ୍ତି ଯେ, ତାହା ନ ମିଳିଲେ ସବୁ ଅଚଳ ରହି ଯାଉଛି । ଚା’ ବ୍ୟବସାୟୀମାନେ ଘର ଘର ବୁଲି-ବିନା ମୂଲ୍ୟରେ ଚା’ ପିଆଇଲେ ଏବଂ ଚା’ର ପ୍ରଶଂସାରେ ଶତମୁଖ ହୋଇ ଉଠିଲେ । “ଚା’ ପିଅ ବହୁତ ଦିନ ଜିଅଁ”, “ଗରମ ସମୟରେ ଗରମ ଚା’ ଶରୀରକୁ ଥଣ୍ଡା ରଖେ”, ଏପରି ପ୍ରଚାର କରିବାରେ ଲାଗିଲେ । ଏକଥା ତ ନିତାନ୍ତ ମିଛ । ତଥାପି ସେମାନେ ନିଜ ଜିନିଷକୁ ଖୁବ୍ ଭଲ ଭାବରେ ସମାଜରେ ଚଳେଇ ଦେଇ ପାରିଲେ । ନବ-ନିର୍ମାଣ ବିଷୟର ଧାରାକୁ ଜନମାନସରେ ପ୍ରତିଷ୍ଠିତ କରିବାକୁ ହେଲେ, ଆମ୍ଭମାନଙ୍କୁ ଚା’ ବ୍ୟବସାୟୀଙ୍କଠାରୁ ଅନେକ କିଛି ଶିଖିବାକୁ ହେବ ।

ଯେଉଁ ପୁସ୍ତକ ପଢ଼ିବାକୁ ଦିଆଯିବ, ତାହାର ଅଶେଷ ଗୁଣଗାନ କରିବା ଆବଶ୍ୟକ । ତାହାର ମହାତ୍ମ୍ୟ ବର୍ଣ୍ଣନା ପୂର୍ବକ, ଲୋକମାନଙ୍କ ମନରେ ଏପରି ଆଗ୍ରହ ସୃଷ୍ଟି କରିବା ଆବଶ୍ୟକ ଯାହା ଫଳରେ ସେମାନେ ସ୍ୱୟଂ ପୁସ୍ତକମାନ ମାଗିନେଇ ପାଠ କରିବେ । ଦିନକ ପରେ ତାଙ୍କୁ ବହିଦେବା ଭଲ । କାରଣ ଦିନଟିଏର ବିଳମ୍ବରେ ପାଠକଙ୍କର ଆଗ୍ରହ ଆଉ ଟିକିଏ ବଢ଼ିଯିବ । ମାଗିବା ସଙ୍ଗେ ସଙ୍ଗେ ପୁସ୍ତକଟି ଦେଇଦେଲେ, ହୁଏତ ପଢିବାର ଇଚ୍ଛା କମ୍ ହୋଇଯାଇ ପାରେ ତେଣୁ ଆବଶ୍ୟକ ସ୍ଥଳରେ ମନୋବୈଜ୍ଞାନିକ ପ୍ରୟୋଗ କରାଯାଇ ପାରେ । ପ୍ରଥମ ଦିନ କଥାବାର୍ତ୍ତା ଛଳରେ ପ୍ରକାଶ କରାଯାଇ ପାରେ କି ନିଜ ପାଖରେ ଏକ ଉପଯୋଗୀ ପୁସ୍ତକ ଅଛି । ଇଚ୍ଛୁକ ପାଠକ ଚାହିଁଲେ ସେ ପୁସ୍ତକ ତା’ ପରଦିନ ନେଇ ପାରନ୍ତି । ପରଦିନ ପୁସ୍ତକ ଦେବା କାଳରେ ତତ୍ ସମ୍ବନ୍ଧୀୟ ସାମାନ୍ୟ ଆଲୋଚନା ଓ ପ୍ରଶଂସା କରାଯାଇ ପାରେ । କୌଣସି ବ୍ୟକ୍ତି ସେ ପୁସ୍ତକ ପାଠ କରି ଉପକୃତ ହୋଇଛନ୍ତି ବା ପ୍ରେରଣା ପାଇଛନ୍ତି, ଏ ସମ୍ବନ୍ଧରେ ବିସ୍ତାରିତ ଆଲୋଚନା କରିବା ଦରକାର । ରୁଚି ବୃଦ୍ଧି କରିବାର ଏହା ଏକ ଉତ୍ତମ ଉପାୟ ।

ନିଜ ସହରରେ ବହୁତ ଶିକ୍ଷିତ ଲୋକ ଥିବେ । ସେମାନଙ୍କ ସହ ସୌଜନ୍ୟ-ପୂର୍ଣ୍ଣ ସମ୍ପର୍କ ସ୍ଥାପନ କରାଯାଇ ପାରେ । ପୂର୍ବରୁ ସେମାନଙ୍କଠାରେ ସତ୍ ସାହିତ୍ୟ ପାଠ କରିବାର ରୁଚି ନଥିଲେ, ସେ ପ୍ରବୃତ୍ତି ସେମାନଙ୍କଠାରେ ଜାଗ୍ରତ କରାଯାଇ ପାରେ । ବହୁତ ଲୋକଙ୍କୁ ପ୍ରଚୁର ଅବକାଶ ମିଳିଥାଏ । ସମୟ କାଟିବା ଲାଗି ସେମାନେ ଗପସପ କରନ୍ତି । ବୁଲି ଯାଆନ୍ତି । ତାସ ପଶା ଖେଳିବାକୁ ସାଥୀ

ଖୋଜନ୍ତି । ଏପରି ଲୋକମାନଙ୍କୁ ଧୀରେ ଧୀରେ ପଢ଼ିବା ଦିଗରେ ଅଭ୍ୟସ୍ତ କରାଯାଇପାରେ । ପଢ଼ିବାରେ ଯେତେବେଳେ ଆନନ୍ଦ ଆସେ, ସେତେବେଳେ ଅନ୍ୟ ଯେ କୌଣସି ବ୍ୟସନ ଭଲ ଲାଗେନାହିଁ । ସାହିତ୍ୟ ପ୍ରାଣବନ୍ତ ହୋଇଥିଲେ, ତାହା କଦାପି ନିଷ୍ଫଳ ଯାଏ ନାହିଁ । ତାହା ପାଠକଲେ ପାଠକ ଉପରେ ଅବଶ୍ୟ ପ୍ରଭାବ ପଡ଼ିଥାଏ । ଏହି ପ୍ରଭାବ ଗଭୀର ହେବା ସଙ୍ଗେ ସଙ୍ଗେ ପାଠକ ନବ-ନିର୍ମାଣ ଦୃଷ୍ଟିରୁ ଅଧିକ ଉପଯୁକ୍ତ ହେବା ସ୍ୱାଭାବିକ ।

ଅନେକ ପରିବାରରେ କନ୍ୟା, ବଧୂ ଏବଂ ମା'ମାନେ ଶିକ୍ଷିତା । ସେମାନଙ୍କର ସୁନ୍ଦର ରୁଚି ଥାଏ ଓ ସମସ୍ତ ବି ମିଳେ । ମାତ୍ର ପରିବାରରେ ସେମାନେ ଏପରି ସୁବିଧା ପାଇ ନ ଥା'ନ୍ତି । ତେଣୁ ସେମାନେ ଅଧିକ ଜ୍ଞାନ ଲାଭ କରିବାରେ ଅସମର୍ଥ ହୋଇଥା'ନ୍ତି । ଭାବୀ ସଂସାରର, ନୂତନ ଯୁଗର ନିର୍ମାଣକର୍ତ୍ତ୍ରୀ ହେଉଛନ୍ତି ନାରୀ । ତାହାର ମାନସିକ ସ୍ତରର ଅନୁଭୂତି ଅନୁସାରେ ସନ୍ତାନର ସ୍ୱଭାବ ଗଠିତ ହୋଇଥାଏ । ତେଣୁ ନାରୀ ଜାତିର ସୁଶିକ୍ଷା ପ୍ରତି ଦୃଷ୍ଟି ଦେବା ସର୍ବାଧିକ ପ୍ରୟୋଜନ । ଘରେ, ପରିବାରରେ, ଅଫିସରେ, କାରଖାନାରେ ତଥା ସ୍କୁଲରେ ଖୋଜିଲେ, ପଢ଼ିବା ଲାଗି ଇଚ୍ଛା ପୋଷଣ କରୁଥିବା ଅନେକ ମହିଳା ମିଳିପାରିବେ । ସ୍ଥାନୀୟ ବିଦ୍ୟାଳୟରେ ଏପରି ସ୍ୱଭାବବିଶିଷ୍ଟ ଅଧ୍ୟାପିକା ଓ ଛାତ୍ରୀମାନେ ମିଳିପାରନ୍ତି । ଏହି ପ୍ରେରଣାପ୍ରଦ ସତ୍ ସାହିତ୍ୟ ସେମାନଙ୍କ ହାତ ପର୍ଯ୍ୟନ୍ତ ପହଞ୍ଚିବା ଦରକାର । କୌଣସି ମହିଳା ଯଦି ଏପରି କାର୍ଯ୍ୟର ଭାର ନିଅନ୍ତି, ତେବେ ଖୁବ୍ ଉତ୍ତମ କଥା । କାରଣ ମହିଳା କର୍ମୀ ଅବାଧରେ ଅନ୍ୟ ଘରକୁ ଯାଇପାରନ୍ତି ଓ ସମ୍ପର୍କ ସ୍ଥାପନ କରିପାରନ୍ତି । ଏହି ଢଙ୍ଗର ଅନେକ ମହିଳା ସମାଜରେ ପହଞ୍ଚିଗଲେ, ଆଶାଜନକ ପରିଣାମ ଦେଖାଦେବା ଖୁବ୍ ସମ୍ଭବ ।

ବିଶ୍ୱର ଭବିଷ୍ୟତ ନେତୃତ୍ୱ ମହିଳାମାନଙ୍କ ହାତରେ ରହିବ, ଏକଥା ଭୁଲିବାର ନୁହେଁ । ପୁରୁଷ ପରାକ୍ରମୀ ହୋଇପାରେ ଅନ୍ୟ ଗୁଣ ତା'ଠାରେ ଥାଇପାରେ ମାତ୍ର ଲୋକ-ନେତୃତ୍ୱ ଦୃଷ୍ଟିରେ ସେ ସଫଳ ହୋଇ ପାରି ନାହିଁ । ନିଜର କଠୋର ପ୍ରକୃତି ଯୋଗୁ ସେ ସବୁ କ୍ଷେତ୍ରରେ ସଂକଟ ଏବଂ ସଂଘର୍ଷ ଉତ୍ପାଦନ କରିଥାଏ । ଏଣିକି ନାରୀମାନଙ୍କର ପାଳି ପଡ଼ିଲାଣି । ନାରୀ ଜାତି ସ୍ନୀଗ୍ଧ ସହଜ ଓ ବାତ୍ସଲ୍ୟ ସମର୍ପଣ, ଉଦାରତା ତପ ଏବଂ ତ୍ୟାଗର ସ୍ୱାଭାବିକ ବିଶେଷତ୍ୱ ଯୋଗୁ ସେ ଭବିଷ୍ୟତରେ ସଂସାରର ନେତୃତ୍ୱ କରିବ । ତା'ପରେ ଯାଇ ଶାନ୍ତି, ସ୍ନେହ ଓ

ସୌଜନ୍ୟପୂର୍ଣ୍ଣ ବାତାବରଣ ସୃଷ୍ଟି ହେବ । ତାଙ୍କୁ ଲୋକ-ନେତୃତ୍ୱ ପାଇଁ ଗଠନ କରିବାକୁ ହେଲେ, ତାହାର ଭାବନାତ୍ମକ ଉତ୍କର୍ଷ ଖୁବ୍ ବେଶୀ ଆବଶ୍ୟକ । ଝୁଲ ପୁସ୍ତକାଳୟ ଏହି ଆବଶ୍ୟକତାକୁ ସନ୍ତୋଷଜନକ ଭାବରେ ପୂର୍ଣ୍ଣ କରି ପାରିବ, ଏହା କହିବା ବାହୁଲ୍ୟ ମାତ୍ର ।

ତରୁଣମାନଙ୍କ ପ୍ରତି ମଧ୍ୟ ବିଶେଷ ନଜର ରଖିବା ଦରକାର । ବୟସ୍କ ଲୋକମାନଙ୍କର ଗୋଟିଏ ପ୍ରକୃତି ଥାଏ ଯେ ସେମାନେ ପୁରୁଣା କାଳିଆ ରୀତିନୀତିକୁ ପସନ୍ଦ କରିଥାନ୍ତି । ଯୁବକମାନଙ୍କୁ ସେମାନେ ବୁଦ୍ଧିହୀନ ବୋଲି ବିଚାର କରିଥାନ୍ତି । ଠିକ୍ ସେହିପରି ନୂତନ ଚିନ୍ତାଧାରାକୁ ବି ଅନୁପଯୁକ୍ତ ବୋଲି ମନେ କରନ୍ତି । ତେଣୁ ବୟସ୍କଲୋକମାନଙ୍କୁ ଏ ଦିଗକୁ ଟାଣି ଆଣିବାର ଚେଷ୍ଟା ପ୍ରାୟ ବୃଥା । ବୟସ୍କ ଲୋକମାନଙ୍କୁ ବୁଝାଇବାରେ ସମୟ ଅପବ୍ୟୟ ନ କରି, ଝୋଲି ପୁସ୍ତକାଳୟର ଉପଯୋଗିତା ସମ୍ପର୍କରେ ଯୁବକମାନଙ୍କୁ ବୁଝାଇବା ଉଚିତ । ବୟସ୍କମାନଙ୍କ ମଧ୍ୟରେ ବି ଅନେକ ଅଛନ୍ତି, ଯେଉଁମାନେ ଠିକ୍ ଠିକ୍ ବୁଝିଥାନ୍ତି । ସେମାନଙ୍କୁ ଯୁବକଗୋଷ୍ଠୀ ସଙ୍ଗରେ ମିଶାଇନେଲେ କୌଣସି କ୍ଷତି ନାହିଁ । ଭାରତରେ "ବୁଢ଼ା" ଶବ୍ଦର ଯାହା ଅର୍ଥ ହୋଇଥାଏ, ସେଥିରୁ ଏମାନଙ୍କୁ ବାଦ ଦିଆଯାଇ ପାରେ ।

## ଝୋଲାପୁସ୍ତକାଳୟ ଓ ତାହାର କାର୍ଯ୍ୟକ୍ଷେତ୍ର

ନବନିର୍ମାଣ ସାହିତ୍ୟକୁ କେଉଁ କ୍ଷେତ୍ରରେ ପହଞ୍ଚାଇଲେ ଶ୍ରମ ସାର୍ଥକ ହେବ, ଏହା ଏକ ବିଚାର ଯୋଗ୍ୟ ପ୍ରଶ୍ନ । ବୟସ୍କ ଲୋକମାନେ ବଡ଼େଇ ଚଢ଼େଇ ବହୁତ କଥା କହିପାରନ୍ତି, ମାତ୍ର କୌଣସି ନୂଆ ଜିନିଷ କରିବାକୁ ସାହସ କରନ୍ତି ନାହିଁ । ଯୁବକମାନଙ୍କ ମଧ୍ୟରେ ଉଚ୍ଛୃଙ୍ଖଳତା ଦେଖାଯାଏ ସତ, ମାତ୍ର ସେମାନେ ବୟୋବୃଦ୍ଧ ଲୋକମାନଙ୍କ ପରି ଏତେ ଧୂର୍ତ୍ତ ନୁହନ୍ତି । ଶିକ୍ଷା ମନୁଷ୍ୟଠାରେ ବିଚାରଶୀଳତା ଏବଂ ବୁଦ୍ଧିବାଦ ସୃଷ୍ଟିକରିଥାଏ । ଏହି ଗୁଣକୁ ଭୁଲ ଦିଗରେ ପରିଚାଳିତ କଲେ ଅପକାର ହୋଇଥାଏ । ମାତ୍ର ଠିକ୍ ଦିଗରେ ପରିଚାଳିତ କରି ପାରିଲେ, ନବଯୁବକମାନଙ୍କୁ ଆଦର୍ଶମୟ କରି ଗଠନ କରାଯାଇପାରେ । ରାଷ୍ଟ୍ର ଏବଂ ସଂସ୍କୃତିର ନିର୍ମାଣ ଓ ଉନ୍ନତି କେବଳ ଶିକ୍ଷିତ ନବ ଯୁବକମାନଙ୍କ ଦ୍ୱାରା ହିଁ ସମ୍ଭବ । ତେଣୁ ଆମ୍ଭେମାନେ ସେହି ଶ୍ରେଣୀରେ ପ୍ରବେଶ କରିବା ଉଚିତ ।

ଜୀବନ ସାହିତ୍ୟକୁ ଛାତ୍ର ଏବଂ ଅଧ୍ୟାପକମାନଙ୍କ ସମୀପକୁ ନେବା ଆବଶ୍ୟକ ।

ଅଧ୍ୟାପକଙ୍କ ଜୀବିକା ଅନ୍ୟ ଜୀବିକାଠାରୁ ଅଧିକ ସାତ୍ତ୍ୱିକ ଧରଣର । ଅଧ୍ୟାପନାରେ ନିଯୁକ୍ତ ଥିବା କାରଣରୁ ସେ ଅନ୍ୟମାନଙ୍କଠାରୁ ନିଶ୍ଚୟ ଅଧିକ ବିଚାରଶୀଳ । ସେ ମଧ୍ୟ ଅଧିକ ଦାୟିତ୍ୱ ସମ୍ପନ୍ନ ବ୍ୟକ୍ତି, କାରଣ ପିଲାମାନଙ୍କର ଏକ ଗୁରୁତ୍ୱପୂର୍ଣ୍ଣ ସଂସ୍କାର ଦାୟିତ୍ୱ ତାଙ୍କ ଉପରେ ନ୍ୟସ୍ତ ରହିଛି । ଅଧ୍ୟାପକ ଓ ଛାତ୍ର ଶ୍ରେଣୀ ଏପରି ଗୋଟିଏ ଗୋଷ୍ଠୀ ଯେଉଁଠାରେ ମାନବୀୟ ଆଦର୍ଶର ଆଲୋକ ବୃଦ୍ଧି ସଂଗଠନ ଉପରେ ପହଞ୍ଚାଇଲେ, ତାହା ଅବହେଳିତ ବା ଅନାଦୃତ ହେବାର ଆଶଙ୍କା ମୋଟେ ନାହିଁ । ବର୍ତ୍ତମାନ ଯୁଗର ଛାତ୍ର ସମାଜ ହିଁ ଭବିଷ୍ୟତର ଗୁରୁଦାୟିତ୍ୱ ବହନ କରିବାରେ ସମର୍ଥ । ତେଣୁ ସେମାନଙ୍କୁ ଠିକ୍ ମାର୍ଗରେ ପରିଚାଳିତ କରିପାରିଲେ, ଯୁଗ-ନିର୍ମାଣର ସମ୍ଭାବନା ମୂର୍ତ୍ତିମାନ ହେବାର ଆଶା ରହିଛି ।

ଅଧ୍ୟାପକ ଗୋଷ୍ଠୀ ଓ ୧୪ ବର୍ଷରୁ ଅଧିକ ବୟସ୍କ ଛାତ୍ରମାନଙ୍କ ମଧ୍ୟରେ ଆମ୍ଭ-ମାନଙ୍କ ସ୍କୁଲପୁସ୍ତକାଳୟର ପ୍ରବାହ ପହଞ୍ଚିବା ଆବଶ୍ୟକ । ଗାଁ ଗହଳରେ ମଧ୍ୟ ଅଧ୍ୟାପକ ରହିଥା'ନ୍ତି । ଉଚ୍ଚ ଇଂରାଜୀ ବିଦ୍ୟାଳୟମାନଙ୍କରେ ଅଧିକାଂଶ ଛାତ୍ରଙ୍କ ବୟସ ୧୪ ବର୍ଷରୁ ଅଧିକ । ଅନେକ ସ୍ଥାନରେ ଏପରି କେତେକ ବିଦ୍ୟାଳୟର ଛାତ୍ର ଓ ଅଧ୍ୟା-ପକଙ୍କ ସଂଖ୍ୟା ତିନି ହଜାରରେ ନହେଲେ ବି କିଛି କମ୍ ହୋଇପାରେ । ସହରମାନ-ଙ୍କର ଶିକ୍ଷାନୁଷ୍ଠାନରେ ଏମାନଙ୍କର ସଂଖ୍ୟା ନିଶ୍ଚୟ କେତେକ ହଜାର । ସ୍କୁଲପୁସ୍ତକା-ଳୟ ଚାଲୁ କରି ଏମାନଙ୍କୁ ବହି ପଢ଼ିବାକୁ ଦେଇ ଓ ଫେରାଇ ନେଇ, ଜୀବନ ସାହିତ୍ୟ ପ୍ରତି ଏମାନଙ୍କର ଆଗ୍ରହ ବୃଦ୍ଧି କରାଇବା ଅତ୍ୟନ୍ତ ସହଜ । ଏମାନେ ବିଚାର ବୁଦ୍ଧି ସମ୍ପନ୍ନ । ତେଣୁ ସେମାନେ ଏହି ଉପଯୁକ୍ତ ବିଷୟର ସ୍ୱାଗତ କରିବା ସ୍ୱାଭାବିକ ।

ଲୋକେ ଏ ବିଷୟର ବହିଗୁଡ଼ିକ କିଣନ୍ତି ନାହିଁ, ଏହା ପଢ଼ିବାକୁ ରୁଚି ପ୍ରଦ-ର୍ଶନ କରନ୍ତି ନାହିଁ, ବହି କିଣିଲେ ସୁଦ୍ଧା ପରେ ଚିରିଦିଅନ୍ତି—ଏପରି ଅଭିଯୋଗ ବେଳେବେଳେ ଶୁଣିବାକୁ ମିଳେ । ବହି ନେଲେ, ଫେରାଇ ଦିଅନ୍ତି ନାହିଁ, ଦ୍ୱିତୀୟ-ଥର ନେବା ପାଇଁ ଅମଙ୍ଗ ହୁଅନ୍ତି, ସ୍କୁଲପୁସ୍ତକାଳୟକୁ ଉପହାସ କରନ୍ତି ବା ଏହାର ପରିଚାଳକଙ୍କୁ କୌଣସି ସଂସ୍ଥାର ବେତନ ଭୋଗୀ କର୍ମଚାରୀ ରୂପେ ମନେ କରିଥାନ୍ତି-ଏପରି ଦୃଷ୍ଟାନ୍ତ ମଧ୍ୟ ବିରଳ ନୁହେଁ । ଯେଉଁମାନଙ୍କ ଦୃଷ୍ଟିରେ ବିଚାର ଶକ୍ତିର କୌଣସି ମୂଲ୍ୟ ବା ମହତ୍ତ୍ୱ ନାହିଁ, କେବଳ ସେମାନଙ୍କର ମଧ୍ୟରେ ଏପରି ଚିନ୍ତା ଆସିବା ସ୍ୱାଭାବିକ । ଏପରି ବ୍ୟକ୍ତିମାନେ ନିଜର ଶରୀରକୁ ସବୁକିଛି ବୋଲି ମନେ କରିଥା'ନ୍ତି ଓ ଲୋଭ, ମୋହର ତୃପ୍ତିକୁ ପ୍ରାଧାନ୍ୟ ଦେଇଥା'ନ୍ତି । ଯେଉଁମାନେ ବିଚାରତତ୍ତ୍ୱର

ଗୁରୁତ୍ୱ ସମ୍ବନ୍ଧରେ କୌଣସି କଥା ଶୁଣିପାରୁନାହାନ୍ତି, ବୁଝି ନାହାନ୍ତି, ସେମାନଙ୍କଠାରୁ ଏପରି ଉପେକ୍ଷା, ଉପହାସ ବ୍ୟତୀତ ଆଉ କ'ଣ ଆଶା କରାଯାଇ ପାରେ ? ଖାଲି-ପୀ ହୀରାକୁ କାଚ ମଣି ଫିଙ୍ଗି ଦେଲେ, ତାକୁ କ'ଣ ଦୋଷ ଦେବାକ ? ତାକୁ କେହି ହୀରାର ମୂଲ୍ୟ ବିଷୟରେ କହି ନାହିଁ । ଯଦି ତାକୁ କେହି ବୁଝାଇ ଦିଅନ୍ତି ଯେ, ତା'ର ଝୋଳେଇରେ ଥିବା କୋଇଁଠାରୁ ହୀରା ଅଧିକ ମୂଲ୍ୟବାନ୍ ତେବେ ସେ କେବେହେଲେ ହୀରାକୁ ଫିଙ୍ଗି ଦିଅନ୍ତା ନାହିଁ ।

ଏ ଯୁଗରେ ବିଦ୍ୟାରର ମୂଲ୍ୟ ବୁଝିବାକୁ ବା ବୁଝାଇବାକୁ କେହି ନାହିଁ । ସମସ୍ତେ ତ ଲୋଭ ମୋହକୁ ଚିହ୍ନିଲେ ଓ ଚିହ୍ନାଇଦେଲେ । ସତ୍ ବିଚାରର ମହତ୍ତ୍ୱ ପ୍ରତିପାଦନ କରିବାକୁ କରିବାକୁ ବାଞ୍ଛା ରହିଲା କଏ ? ଯେଉଁ ବସ୍ତୁର ମୂଲ୍ୟ, ଜଣା ନାହିଁ, ତା' ପ୍ରତି ଆକର୍ଷଣ ରହିବ କିପରି ? ଯାହା ପ୍ରତି ଆକର୍ଷଣ ନାହିଁ, ରୁଚି ନାହିଁ, ତାହାର ସମ୍ମାନ ଆସିବ କେଉଁଠୁ ?

ଏପରି ସ୍ଥିତିରେ ଝ଼ିଲ୍ଲପୁସ୍ତକାଳୟର ସତ୍ ଉଦ୍ଦେଶ୍ୟକୁ ଲୋକମାନେ ଉପ-ହାସ ବା ତିରସ୍କାର କରିବେ, ଏଥିରେ ଦୁଃଖ କରିବାର କୌଣସି କାରଣ ନାହିଁ । ଏଥିରେ ଭୁଲ ହେଉଛି ଶିକ୍ଷିତ ଗୋଷ୍ଠୀର । ଜନତା ବିଦ୍ୟାରଶୀଳତାର ମହତ୍ତ୍ୱ ବୁଝନ୍ତୁ— ଏପରି ପ୍ରଯତ୍ନ ସେମାନେ କେବେ କରିଛନ୍ତି କି ? ମନୁଷ୍ୟର ପ୍ରଗତି, ସୁଖ, ଶାନ୍ତି ପ୍ରଭୃତି ଉତ୍କୃଷ୍ଟ ବିଚାର ଉପରେ ଆଧାରିତ, ଏ ବିଷୟ ଜନତାକୁ ବୁଝାଇବାର ପ୍ରୟାସ କେହି କରିଛି କି ? ସଦ୍‌ବିଚାରର ମୂଲ୍ୟ ଏବଂ ରହସ୍ୟମୟୀ ଶକ୍ତି ଉପରେ ମାନବ ଜୀବନ ପ୍ରତିଷ୍ଠିତ—ଏ କଥା ଯଦି ସମସ୍ତେ ଭଲ ଭାବରେ ହୃଦୟଙ୍ଗମ କରନ୍ତି, ତେବେ ଏହି ଦିବ୍ୟ ସମ୍ପଦ ଲାଭ ପାଇଁ ସମସ୍ତେ ଯତ୍ନବାନ ହେବେ ।

ଯେଉଁମାନେ ଏଥିପ୍ରତି ଆଗ୍ରହ ପ୍ରଦର୍ଶନ କରୁ ନାହାନ୍ତି, ସେମାନଙ୍କୁ ଏକା-ବେଳେ ଭୁଲିଯିବା କଥା ନୁହେଁ । ଉତ୍ତମ ବିଚାରର ମହତ୍ତ୍ୱ ସେମାନଙ୍କୁ ବୁଝାଇ-ଦେବା ଦରକାର । ଏଥିପାଇଁ ସାହିତ୍ୟ ବ୍ୟତୀତ ପ୍ରବଚନ, ଦୃଶ୍ୟ ଅଭିନୟ, ପ୍ରଦର୍ଶନୀ ଇତ୍ୟାଦି ମାଧ୍ୟମରେ ସେମାନଙ୍କର ଆଗ୍ରହ ଉତ୍ପନ୍ନ କରିବା ଲାଗି ପ୍ରଚେଷ୍ଟା ହେବା ଉଚିତ । ଜୀବନ ସାହିତ୍ୟକୁ ଆଗ୍ରହରେ ଅଧ୍ୟୟନ କରିବା ଲାଗି ପ୍ରଥମ ଚରଣ ପୂର୍ତ୍ତି କରିବାକୁ ଏହି ଉପାୟ ଅବଲମ୍ବନୀୟ । ଏଥିଲେ ଅଭିରୁଚି ଉତ୍ପନ୍ନ ହେବାପରେ, ଜୀବନ ସାହିତ୍ୟ ପଢ଼ିବାକୁ ଦିଆଯିବା ଉଚିତ ।

ଯେଉଁମାନେ ଶିକ୍ଷା, ଅଧ୍ୟାପନା ଓ ବିଦ୍ୟାରଶୀଳତାର ମହତ୍ତ୍ୱ କିଛି କିଛି

ଭୁଞ୍ଜିପାରଛନ୍ତି, ସେମାନଙ୍କୁ ଏହିଦଗକୁ ଓଟାଣି ଆଣିବାର ଚେଷ୍ଟା କରିବା ପ୍ରୟୋଜନ । ଛାତ୍ର ଏବଂ ଅଧ୍ୟାପକମାନେ ଏହି ଶ୍ରେଣୀର ଅନ୍ତର୍ଭୁକ୍ତ । ଏମାନଙ୍କୁ ନବନିର୍ମାଣ ଯୋଜନାର ପ୍ରଥମ ପାହାଚ କୁହାଯାଇପାରେ । ଏହି ଶ୍ରେଣୀର ଲୋକ ପ୍ରତ୍ୟେକ ଯାଗାରେ ମିଳିବେ । ତେଣୁ ସଂପର୍କ ସ୍ଥାପନ କରିବା କଷ୍ଟସାଧ୍ୟ ନୁହେଁ । ସହିଷ୍ଣୁତା ଉପରେ ବିଶ୍ୱାସ ଥିବାରୁ ଏମାନେ ଏପ୍ରକାର ଉଦ୍ଦେଶ୍ୟକୁ ବ୍ୟଙ୍ଗ ବା ଉପହାସ କରିବେ ନାହିଁ । ପୁସ୍ତକ ହଜାଇ ଦେବା, ଚିରିଦେବା କିମ୍ବା ନଫେରାଇବା ଏହି ଶ୍ରେଣୀର ଲୋକମାନଙ୍କଠାରେ ସମ୍ଭବ ନୁହେଁ । ସ୍କୁଲ ପୁସ୍ତକାଳୟ ପରିଚାଳିତ କରିବା ବ୍ୟକ୍ତିମାନେ ଅନ୍ୟ କ୍ଷେତ୍ର ଅପେକ୍ଷା ଏହି କ୍ଷେତ୍ରରେ ଅଧିକ ସୁବିଧାଜନକ ଭାବରେ କାମ କରି ପାରିବେ ଓ ସଫଳତା ଲାଭ ଯୋଗୁଁ ଉତ୍ସାହିତ ହେବେ । ଛାତ୍ରମାନେ ଯଦି ପ୍ରାରମ୍ଭିକ ଜୀବନରୁ ଆଦର୍ଶବାଦକୁ ଆଦରରେ ଗ୍ରହଣ କରି ପାରିଲେ, ତେବେ ଏହି କ୍ରମ ବରାବର ଚାଲୁ ରହିଥିବ । ପ୍ରଗତି ଏକ ନିର୍ଦ୍ଧାରିତ ପଥରେ ହେବା ଯୋଗୁଁ ଈପ୍ସିତର କୋଠରୀରେ ପହଞ୍ଚିବ ଏବଂ ଦିନେ ଆଦର୍ଶବାଦ ପ୍ରଣୋଦିତ ଏହି ଛାତ୍ରମାନେ ଇତିହାସର ଉଜ୍ଜ୍ୱଳତମ ପୃଷ୍ଠା ମଣ୍ଡନ କରି ସମସ୍ତଙ୍କର ନମସ୍ୟ ହେବେ ।

ଅଧ୍ୟାପକମାନେ ଅଧ୍ୟାପନା ପାଇଁ ଶିକ୍ଷା ପାଇଥାନ୍ତି । ସେମାନଙ୍କୁ ଶିକ୍ଷା ଦେବା ଲାଗି ଏହି ପ୍ରଶିକ୍ଷଣ ସଂସ୍ଥାରେ ଅଧ୍ୟାପକମାନେ ଥା'ନ୍ତି । ଏହି ଅଧ୍ୟାପକମାନଙ୍କୁ ଜୀବନ ସାହିତ୍ୟ ପଢ଼ିବାର ପ୍ରେରଣା ଦେଲେ, ନୈତିକ ଓ ସାଂସ୍କୃତିକ ପୁନରୁତ୍ଥାନକାରିଣୀ କ୍ରିୟା ପ୍ରତି ସେମାନଙ୍କୁ ଆକୃଷ୍ଟ କରାଇ ପାରିଲେ ସେମାନେ ସ୍ୱ ସ୍ୱ ଛାତ୍ରମାନଙ୍କଠାରେ ଅନୁରୂପ ବୀଜ ବପନ କରି ଅଙ୍କୁରୋଦ୍‌ଗମ ଚେଷ୍ଟା କରି ପାରିବେ । ଅଧ୍ୟାପକମାନେ ଇଚ୍ଛା କଲେ ସମାଜର ରୂପ ବଦଳାଇ ଦେବେ । ସେ ନିଜେ ଆକୃଷ୍ଟ ହେଲେ, ତାଙ୍କର ହଜାର ହଜାର ଛାତ୍ରଙ୍କୁ ପରେ ଆକର୍ଷଣ କରି ପାରନ୍ତି । ସେ ନିଜେ ଜ୍ୟୋତିମାନ ହେଲେ, ବହୁଛାତ୍ରଙ୍କୁ ସେ ଆଲୋକ ଦାନ କରି ପାରନ୍ତି । ତେଣୁ ଅଧ୍ୟାପକ ଓ ଛାତ୍ରମାନଙ୍କ ସହ ସମ୍ବନ୍ଧ ସ୍ଥାପନ କରିବା ସର୍ବାଗ୍ରେ କରଣୀୟ । ସ୍କୁଲ ପୁସ୍ତକାଳୟ ଜରିଆରେ ସେମାନଙ୍କଠାରେ ନବନିର୍ମାଣ ବିଚାରଧାରାର ପ୍ରବାହ ସୃଷ୍ଟିକରିବା ଦରକାର । ଏହି ଆଲୋକ ସେମାନଙ୍କ ସାହାଯ୍ୟରେ ଛାତ୍ରମାନଙ୍କଠାରେ ପ୍ରତିଫଳିତ ହେବ । ଛାତ୍ରମାନେ କଞ୍ଚାଡାଳ, ତେଣୁ ମୋଡ଼ିହେବା ସହଜ । କାଦୁଅକୁ ବିଭିନ୍ନ ଆକାର ପ୍ରଦାନ କଲାପରି, ଛାତ୍ରମାନଙ୍କୁ ମଧ୍ୟ ସଠିକ୍‌ଭାବରେ ଗଢ଼ାଯାଇ ପାରିବ । ସେମାନଙ୍କ ମନୋଭୂମିରେ ଆଦର୍ଶବାଦର ବୀଜ ବପନ କରି ପାରିଲେ,

ଭବିଷ୍ୟତରେ ସେହି ମନୋଭୂମିରେ ଅବାଞ୍ଛନୀୟ ଚିନ୍ତାର ଉତ୍ପତ୍ତି କେବେହେଲେ ସମ୍ଭବ ହୋଇ ନପାରେ ।

ନବନିର୍ମାଣ ଲାଗି ସ୍ଥିତପ୍ରଜ୍ଞ ବ୍ୟକ୍ତିମାନଙ୍କର ଆବଶ୍ୟକତା ରହିଛି । ପ୍ରବନ୍ଧ, ଭାଷଣ ଓ ପ୍ରଚାର ଏ ଦିଗରେ କିଛି ସାହାଯ୍ୟ କରେ ମାତ୍ର ପ୍ରତିପାଦିତ ଆଦର୍ଶ ଧାରଣ କରିବାକୁ ସ୍ଥିତପ୍ରଜ୍ଞ ବ୍ୟକ୍ତିମାନଙ୍କର ପ୍ରୟୋଜନ । ଯେଉଁମାନଙ୍କଠାରେ ଈପ୍ସିତ ଶୌର୍ଯ୍ୟ ଏବଂ ସାହସ ଅଛି, ସେମାନେ ହିଁ ନିଜର ତଥା ସମାଜର ନିର୍ମାଣ ଲାଗି ଭୂମିକା ପ୍ରସ୍ତୁତ କରିବାରେ ସମର୍ଥ । ତେଣୁ ଯେପରି ଭାବରେ କହିଲେ ମଧ୍ୟ, ଏ ଯୁଗରେ ସ୍ଥିତପ୍ରଜ୍ଞ ବ୍ୟକ୍ତିମାନଙ୍କର ଆବଶ୍ୟକତା ରହିଛି ବୋଲି ବୁଝିବାକୁ ହେବ । ଏହି ଆବଶ୍ୟକତା ପୂର୍ତ୍ତି କରିବାକୁ ଆମ୍ଭେମାନେ ପ୍ରାଣପଣେ ଚେଷ୍ଟା କରିବା । ଏହାକୁ ପୂର୍ତ୍ତି କରିବା ଦିଗରେ ସ୍କୁଲ ପୁସ୍ତକାଳୟର ଅବଦାନ ବଡ଼ ଗୁରୁତ୍ୱପୂର୍ଣ୍ଣ କିନ୍ତୁ ଉପଯୁକ୍ତ ପାତ୍ରକୁ ଦୃଷ୍ଟିରେ ରଖି କାର୍ଯ୍ୟ ଆରମ୍ଭ କରିବା ଉଚିତ । ଅନୁସନ୍ଧିତ୍ସୁ ଲୋକ ଏବଂ କୁପାତ୍ରମାନଙ୍କୁ ମଧ୍ୟ ପରିବର୍ତ୍ତନ ପଥକୁ ଟାଣି ଆଣିବା ଦରକାର । ମାତ୍ର ପ୍ରଥମେ ଏ କାମ ହାତକୁ ନେଲେ ଶକ୍ତିର ଅଯଥା ଅପବ୍ୟୟ ହୋଇପାରେ । ଏ କ୍ଷେତ୍ରରେ ବହୁ ପରିଶ୍ରମରେ ଖୁବ୍ ଅଳ୍ପ ଫଳ ଲାଭ ହେବ ; ପରୀକ୍ଷାର୍ଥୀମାନେ ପ୍ରଥମେ ପ୍ରଶ୍ନପତ୍ରର ସରଳ ପ୍ରଶ୍ନ ଗୁଡ଼ିକର ଉତ୍ତର ଲେଖିବା ପରି ଆମ୍ଭେମାନେ ପ୍ରଥମେ ବୟସ୍କ ଛାତ୍ର ଓ ବିଚାରଶୀଳ ଅଧ୍ୟାପକଙ୍କୁ ନେଇ କାମ ଆରମ୍ଭ କରିବା । ସ୍କୁଲ ପୁସ୍ତକାଳୟର ଜୀବନ ସାହିତ୍ୟ ଏହି ପ୍ରକାର ଉର୍ବର ଭୂମିରେ ଅଙ୍କୁରିତ ଏବଂ ପଲ୍ଲବିତ ହେବା ସହଜ ।

ବିବାହ ଉପଲକ୍ଷରେ ଯେଉଁ ଧୂମ୍‌ଧାମ୍ ହୁଏ ଓ ଅନାବଶ୍ୟକ ବ୍ୟୟ ହୋଇ-ଥାଏ, ତା' ବିରୁଦ୍ଧରେ ଆନ୍ଦୋଳନ ଚଳାଇବାକୁ ଶିକ୍ଷିତ ଗୋଷ୍ଠୀ ଏବଂ ଛାତ୍ରଗୋଷ୍ଠୀକୁ ପ୍ରେରଣା ଦେବା ଆବଶ୍ୟକ । ଅବିବାହିତ ଥିବାରୁ ଛାତ୍ରମାନେ ଏ ବିଷୟରେ ସିଦ୍ଧାନ୍ତ ଗ୍ରହଣ କରିଥାନ୍ତି ଏବଂ ନିଜର ଅଭିଭାବକଗଣଙ୍କୁ ତାଙ୍କର ସିଦ୍ଧାନ୍ତ ଗ୍ରହଣ କରିବାକୁ ବାଧ୍ୟ କରାଇଥା'ନ୍ତି । ନିଶା ଖାଇବା ଭଳି ଦୁର୍ଗୁଣ ପ୍ରତି ଘୃଣା ଜାତ ହେଲେ, ଭବିଷ୍ୟତରେ ଏହି କୁବ୍ୟସନ କବଳରୁ ମୁକ୍ତିଲାଭ ସହଜ ହୋଇଥାଏ । ନିଶା କବଳରେ ଥରେ ପଡ଼ିଗଲେ ନିସ୍ତାର ପାଇବା ମୋଟେ ସହଜ ନୁହେଁ । ମାତ୍ର ଆରମ୍ଭରୁ ସତର୍କ ରହିଲେ, ଏହାର ପ୍ରଭାବ ଏଡ଼ିଦେବା ଅତ୍ୟନ୍ତ ସହଜ । ସ୍ୱାସ୍ଥ୍ୟ ସଂରକ୍ଷଣ ଓ ଦୀର୍ଘ ଜୀବନର ମୂଳଦୁଆ କିଶୋର ଅବସ୍ଥାରେ ହିଁ ଗଠନ କରାଯାଇ

ଥାଏ । ଏହି ବୟସରେ ଜୀବନର ଧାରା ପରିବର୍ତ୍ତିତ ହୋଇଥାଏ । ଯେ ଯେଉଁ ବାଟରେ ଗଲା, ସେ ସାରାଜୀବନ ସେହିବାଟ ଧରି ଚାଲିଥାଏ । ତେଣୁ କିଶୋର ବୟସରେ ଜୀବନର ଲକ୍ଷ୍ୟ ସ୍ଥିରୀକୃତ କରିନେବା ଅତ୍ୟନ୍ତ ଆବଶ୍ୟକ । କ୍ଷେତରେ ବୀଜ ବପନ କରିବାର ଏକ ନିର୍ଦ୍ଦିଷ୍ଟ ବା ଉପଯୁକ୍ତ ସମୟ ଥାଏ । ସେହି ସମୟରେ ମଞ୍ଜିରୁ ଗଛ ବାହାର କରିଦେବାର ଶକ୍ତି ଭୂମିରେ ରହିଥାଏ । ବୁଦ୍ଧିମାନ କୃଷକ ଏକଥା ବୁଝେ, ଠିକ୍ ସମୟରେ ବୀଜବପନ କରେ ଏବଂ ଭଲ ଫସଲ ଆମଦାନୀ କରେ । ମାନବ ଜୀବନରେ କିଶୋର ସମୟ ହେଉଛି ଉପଯୁକ୍ତ ସମୟ, ଯେତେବେଳେ ଭବିଷ୍ୟତ ଜୀବନର ଧାରା ନିରୂପିତ ହୋଇଥାଏ । ତେଣୁ ଏହି ବୟସରେ ସେମାନଙ୍କର ମନଃକ୍ଷେତ୍ରରେ କୌଣସି ଅବାଞ୍ଛିତ ବୀଜ ବପନ ସମ୍ଭବ ହେବା ପୂର୍ବରୁ, ସେଥିରେ ଆଦର୍ଶବାଦ ଏବଂ ମହାନତାର ବୀଜ ବପନ କରିଦେବା ଆବଶ୍ୟକ । ଫଳସ୍ୱରୂପ ଭବିଷ୍ୟତରେ ସେମାନେ ବିଶ୍ୱରେ ସୁଖଶାନ୍ତିର ଅଭିବର୍ଦ୍ଧନ ନିମନ୍ତେ ବହୁତ ଅବଦାନ ଦେଇପାରିବେ । ବୁଦ୍ଧିମାନ ବ୍ୟକ୍ତି ସ୍କୁଲ ପୁସ୍ତକାଳୟ ମାଧ୍ୟମରେ ଖୁବ୍ ମହତ୍ତ୍ୱପୂର୍ଣ୍ଣ କର୍ମ ସମ୍ପାଦନ କରି ସମାଜର ମହାନ୍ ଆବଶ୍ୟକତା ପୂର୍ତ୍ତି କରିପାରନ୍ତି । ସେମାନଙ୍କ ପକ୍ଷରେ ଏହା କରଣୀୟ ।

ଆମ ଦେଶରେ ବିଚାରଶୀଳ ବ୍ୟକ୍ତିମାନଙ୍କ ସଂଖ୍ୟା ଅନେକ କମ୍ । ଶିକ୍ଷାର ଅଭାବ, ଗତ ହଜାର ବର୍ଷ ଧରି ରହିଥିବା ଅଜ୍ଞାନ ଅନ୍ଧକାରର ପ୍ରଭାବ, ସ୍ୱାଧୀନତା ପରେ ଉପଯୁକ୍ତ ପ୍ରଗତିର ଅଭାବ, ଏହି ସବୁ କାରଣର ମିଳିତ ଫଳ ସ୍ୱରୂପ, ଆଜି ମଧ୍ୟ ଲୋକମାନଙ୍କରେ କୌଣସି ଉନ୍ନତି ହୋଇ ପାରିନାହିଁ । ସେମାନଙ୍କ ମନରେ ତୃଷ୍ଣା ଓ ବାସନା ବସାବାନ୍ଧି ରହିଯାଇଛି । ଧନ ଉପାର୍ଜନ, ଅହଙ୍କାର ଏବଂ ବାସନାତ୍ମକ ମନୋରଞ୍ଜନ ସମ୍ପର୍କରେ ମନୁଷ୍ୟ ସବୁବେଳେ ଚିନ୍ତା କରୁଛି । ବର୍ତ୍ତମାନ ଯୁଗ ଏହି ଧାରାରେ ଚାଲିଛି । ଏ ପରିସ୍ଥିତିରେ ବିଚାରଶୀଳତା ଜନ୍ମ ନେବ କିପରି ? ଲୋକମାନଙ୍କ ମନରେ ବିଚାରଶୀଳତାର ବୀଜ ଅଙ୍କୁରିତ ନହେଲେ, ଜୀବନ ସାହିତ୍ୟର ଆବଶ୍ୟକତା ଅନୁଭୂତ ହେବ କିପରି ? ଆବଶ୍ୟକତା ଅନୁଭବ ନ କଲେ, ସେପରି ସାହିତ୍ୟ ପାଠ କରିବା ଲାଗି ସମୟ ବ୍ୟୟ କରିବ କିଏ ?

ଏ ପରିସ୍ଥିତି ବାସ୍ତବରେ ଚିନ୍ତାଜନକ, ମାତ୍ର ନିରାଶ ହେବାର କିଛି ଆବଶ୍ୟକତା ନାହିଁ । ମନୁଷ୍ୟ ପରମାତ୍ମାଙ୍କର ପ୍ରିୟ ପୁତ୍ର । ମନୁଷ୍ୟ ଭିତରେ ବିବେକର ଅଗ୍ନି ସ୍ଫୁଲିଙ୍ଗ ଲୁଚି ରହିଛି । ସୁବିଧା ମିଳିଲେ ତାହା ଦିବ୍ୟଜ୍ୟୋତି

ରୂପରେ ପ୍ରକାଶ ପାଇପାରେ । ନିଦ୍ରିତ ବ୍ୟକ୍ତିକୁ ଉଠାଇଦେବାରେ ଯେଉଁ ପ୍ରକ୍ରିୟା କରାଯାଏ, ଆମକୁ ସେହି ପ୍ରକ୍ରିୟା ଅନୁସରଣ କରିବାକୁ ହେବ । ବିବେକ ଥରେ ଚେତିଗଲେ, ସେ ନିଜର ଆବଶ୍ୟକତା ଅନୁଭବ କରି ପାରିବ ଓ ଉପଯୁକ୍ତ ଜିନିଷ ଖୋଜିବାରେ ଲାଗିବ । ବହୁଦିନ ଧରି ଆମ୍ଭେମାନେ ବିଦେଶୀ ଶକ୍ତିର ଶାସନାଧୀନ ଥିବା ଫଳରେ ଆମ୍ଭମାନଙ୍କର ଅନ୍ତରସ୍ଥ ମହତ୍ତ୍ୱ ନଷ୍ଟ ହୋଇଯାଇଛି । ପାଶବିକ ପ୍ରବୃତ୍ତି ଓ ତଦନୁରୂପ ଇଚ୍ଛାରେ ଆମ୍ଭମାନଙ୍କ ମନୋଭୂମି ଭରପୂର । ଏପରି ପରିସ୍ଥିତିରେ ଆମ୍ଭମାନଙ୍କର ମାନସିକ ବିକାଶ ନହେବା ଆଶ୍ଚର୍ଯ୍ୟଜନକ ନୁହେଁ । ଆଦର୍ଶବାଦ ଓ ମହାନ୍ ଭାବ ହେଉଛି ମନୁଷ୍ୟର ଅନ୍ତର୍ନିହିତ ଗୁଣ । ଅନ୍ତଃକରଣରେ ଏହି ଗୁଣର ବିକାଶ ହେଲେ ମନୁଷ୍ୟ ଅନୁଭବ କରେ ଯେ ଅଭୀଷ୍ଟ ପ୍ରାପ୍ତିର ଉଦ୍ଦେଶ୍ୟରେ ଆତ୍ମଶୋଧନ, ଆତ୍ମ-ନିର୍ମାଣ, ଆତ୍ମବିକାଶର ଆବଶ୍ୟକତା ରହିଛି । ଏହି ସ୍ଥିତିରେ ସ୍ୱାଧ୍ୟାୟ ନିମନ୍ତେ ଖୁବ୍ ପ୍ରେରଣା ମିଳିଥାଏ । ବିବେକଶୀଳତା ଓ ବିଚାରଶୀଳତା ଏହି ଅବସ୍ଥାରେ ଅନୁଭବ କରାଯାଏ । ଆଜି ତ ସେ ପରିସ୍ଥିତି ନାହିଁ । ସ୍ୱାଧ୍ୟାୟରେ ରୁଚି ଆସିବ କିପରି ? ଏହାର ଉପଯୋଗୀତା ଏବଂ ଆବଶ୍ୟକତା ଅନୁଭବ କରାଯାଇ ପାରିବ କିପରି ?

ଯେଉଁମାନେ ପ୍ରବୁଦ୍ଧ ଓ ଜାଗ୍ରତ ସେମାନେ ଏ ବିଷମ ପରିସ୍ଥିତିକୁ ପରିବର୍ତ୍ତନ କରିବାର ଉତ୍ତରଦାୟିତ୍ୱ ବହନ କରି ପାରନ୍ତି । ସନ୍ନିପାତଗ୍ରସ୍ତ ରୋଗୀ ଉପରେ ଦୋଷାରୋପ କରିବା ବ୍ୟର୍ଥ । ଯେଉଁମାନେ ଚିକିତ୍ସା ବା ପରିଚର୍ଯ୍ୟା କରନ୍ତି, ଦୋଷଟା ସେହିମାନଙ୍କର । ପ୍ରତ୍ୟେକ ପ୍ରବୁଦ୍ଧ ବ୍ୟକ୍ତି ନିଜର ସମସ୍ତ କାମ ଛାଡ଼ି ଜନ ଜାଗରଣ କର୍ମରେ ମନୋନିବେଶ କରନ୍ତୁ—ଏହାହିଁ ହେଉଛି ଯୁଗର ଆହ୍ୱାନ । ଏହି ବିଷମ ପରିସ୍ଥିତିରେ ସବୁଠାରୁ ଶ୍ରେଷ୍ଠ ତପସ୍ୟା ହେଉଛି, ସୁପ୍ତ ସଦ୍‌ଭାବନାକୁ ଜାଗ୍ରତ କରାଇବା । ସୁଦୂର ବନ ପର୍ବତ ଓ ଦୁର୍ଗମ ପଥରେ ଯାତ୍ରା କରି ତୀର୍ଥ ଦର୍ଶନ କରିବା କଠିନ ହୋଇପାରେ, ମାତ୍ର ଘର ଘର, ଦ୍ୱାର ଦ୍ୱାର ବୁଲି ଧର୍ମ ସନ୍ଦେଶ ବିତରଣ କରିବା ମୋଟେ କଠିନ ନୁହେଁ ଏବଂ ଏହାର ଉପେକ୍ଷା କରାଯାଇ ନ ପାରେ । ପଦଦଳିତ ମାନବତା ଜାଗ୍ରତ ହେବାକୁ ଚାହେଁ, ସାହାଯ୍ୟ ଚାହେଁ । ସୁପ୍ତ ଅନ୍ତଃକରଣରେ ସଦ୍‌ଜ୍ଞାନର ଆଲୋକ ପହଞ୍ଚାଇବା ଆବଶ୍ୟକ । ଅନ୍ତଃକରଣରେ ଏପରି ଜ୍ୟୋତି ଉତ୍ପନ୍ନ ହେବା ଉଚିତ, ଯାହା ଫଳରେ ନିଜର ଏବଂ ନିଜ ସମ୍ପର୍କରେ ଆସୁଥିବା ବ୍ୟକ୍ତିମାନଙ୍କର ମଙ୍ଗଳ ହେବା

ସମ୍ଭବ ।

ଝୁଲି ପୁସ୍ତକାଳୟ ଏହି ଆବଶ୍ୟକତାକୁ ପୂର୍ଣ୍ଣ କରେ । ଦୀନ ଦରିଦ୍ର ଲୋକ ଝୁଲି ନେଇ ଭିକ୍ଷା ମାଗିଥାଏ । ମାତ୍ର ଏ ଝୁଲିର ଉଦ୍ଦେଶ୍ୟ ଭିନ୍ନ ଓ ସ୍ୱତନ୍ତ୍ର । ଏହା ଅମୃତ, ଜ୍ଞାନ ଓ ମଙ୍ଗଳ ବର୍ଣ୍ଣନର ଅଭିଯାନ । ଏହି ଦାନର ମହିମା ଅତୁଳନୀୟ । ପ୍ରଚୁର ଅନ୍ନ, ବସ୍ତ୍ର ଦାନରେ ଯେ ପୁଣ୍ୟ ସଞ୍ଚୟ ହୁଏ, ଆତ୍ମାର କ୍ଷୁଧା ଓ ଅନ୍ତଃକରଣର ପିପାସା ଶାନ୍ତ କରାଇବାରେ ତା'ଠାରୁ ବହୁ ଗୁଣରେ ଅଧିକ ପୁଣ୍ୟ ଅର୍ଜନ କରାଯାଇ ଥାଏ । ଭୌତିକ ରୂପରେ ଶରୀରର ସେବା କରିବା ଉତ୍ତମ କଥା । କାହାର ବିଶ୍ୱାସକୁ ଜାଗ୍ରତ କରାଇବା କିମ୍ବା କାହାର ଅନ୍ତଃକରଣରେ ଜ୍ଞାନାଲୋକ ପ୍ରଜ୍ୱଳିତ କରାଇବା ଏପରି ପୁଣ୍ୟ କର୍ମ, ଯାହା ସହିତ ଅନ୍ୟ କୌଣସି କର୍ମର ତୁଳନା କରାଯାଇ ପାରିବ ନାହିଁ ।

ପ୍ରତ୍ୟେକ ପ୍ରବୁଦ୍ଧ ବ୍ୟକ୍ତି ଝୁଲି ପୁସ୍ତକାଳୟ ପରିଚାଳନା କରିବା ଦରକାର । ଯୁଗ-ନିର୍ମାଣ ଯୋଜନା ଏଥିପାଇଁ ଉପଯୁକ୍ତ ସାମଗ୍ରୀ ପ୍ରସ୍ତୁତ କରୁଛି । ଏହାକୁ ପ୍ରସାର କରିବା, ସତ୍ପାତ୍ର ହାତରେ ଏହାକୁ ପହଞ୍ଚାଇବା, ସୁପ୍ତ ରୁଚିକୁ ତତ୍ପରତା ପୂର୍ବକ ଜାଗ୍ରତ କରାଇବା ପ୍ରତ୍ୟେକ ଜନସେବକର ପବିତ୍ର କର୍ତ୍ତବ୍ୟ । ଝୁଲି ପୁସ୍ତ-କାଳୟ ପ୍ରକ୍ରିୟାକୁ ଅନୁସରଣ କରି ଏପରି ସତ୍କାର୍ଯ୍ୟ କରାଯାଇ ପାରେ । ଲୋକମାନଙ୍କଠାରେ ନିରାଶା ବା ଉପେକ୍ଷା ଦେଖି ନିରୁତ୍ସାହ ହେବା ଠିକ୍ ନୁହେଁ । ଲୋକମାନଙ୍କୁ ବିଚାରଶୀଳତାର ମହାତ୍ମ୍ୟ ଏବଂ ମହତ୍ତ୍ୱ ବୁଝାଇଦେବା ଆବଶ୍ୟକ । ଉତ୍କୃଷ୍ଟ ବିଚାର ମାଧ୍ୟମରେ ଉତ୍କୃଷ୍ଟ ବ୍ୟକ୍ତିତ୍ୱ, ଉତ୍କୃଷ୍ଟ ବ୍ୟକ୍ତିତ୍ୱ ମାଧ୍ୟମରେ ଉତ୍କୃଷ୍ଟ ସ୍ତରର ଜୀବନଯାପନର ସୁଖ ଶାନ୍ତି ପାଇବା ବିଷୟ ଯଦି ଠିକ୍ ଭାବରେ ଲୋକ-ମାନଙ୍କୁ ବୁଝାଇ ଦିଆଯାଏ, ତେବେ ଝୁଲି ପୁସ୍ତକାଳୟ ମାଧ୍ୟମରେ କରାଯାଉ ଥିବା ସେବାକୁ କେହି କେବେ ଅସ୍ୱୀକାର କରି ପାରିବ ନାହିଁ ।



# * ଗାୟତ୍ରୀ ତପୋଭୂମି *

## ଏକ ମହତ୍ ଧର୍ମ ସଂସ୍ଥା

ଗାୟତ୍ରୀ ତପୋଭୂମି, ମଥୁରା ନଗରର ଠିକ୍ ଏକ ମାଇଲ ଆଗକୁ— ବୃନ୍ଦାବନ ମାର୍ଗରେ, ଯମୁନା କୂଳସ୍ଥ ଶାନ୍ତ ବାତାବରଣ ମଝରେ ପ୍ରତିଷ୍ଠିତ ଏକ ମନୋରମ ଆଶ୍ରମ । ଏଠାରେ ଗାୟତ୍ରୀ ମାତାଙ୍କର ଏକ ସୁନ୍ଦର ମନ୍ଦିର, ଭାରତ ବର୍ଷର ପ୍ରାୟ ୨୪୦୦ ତୀର୍ଥର ଜଳ-ରଜ ସମ୍ମେଳନ ସ୍ଥଳ, ୧୧୨୫ କୋଟି ହସ୍ତଲିଖିତ ଗାୟତ୍ରୀ-ମନ୍ତ୍ରର ସଂଗ୍ରହ କକ୍ଷ, ହିମାଳୟ ନିର୍ଦ୍ଦିଷ୍ଟ ବିରାଟ ଆଶ୍ରମ ସ୍ଥଳ, ମୂର୍ତ୍ତିମାନ ପ୍ରବଚନ କକ୍ଷ, ୧୦ ଗୋଟି ଯଜ୍ଞଶାଳା, ପ୍ରଧାନ ଯଜ୍ଞଶାଳାରେ ଅନବରତ ପ୍ରଜ୍ୱଳିତ ଅଖଣ୍ଡ-ଅଗ୍ନି ସ୍ଥାପନା, ନିତ୍ୟ ଏକ ହଜାର ଗାୟତ୍ରୀ-ମନ୍ତ୍ର ଆହୁତି ଦିଆ ଯାଉଥିବା ହୋମକୁଣ୍ଡ, ବିରାଟ ପୁସ୍ତକାଳୟ, ପ୍ରାୟ ୯୦ ପତ୍ର-ପତ୍ରିକା ଆସୁଥିବା ଏକଥା ହେଉଥିବା ଏକ ବାଚନାଳୟ, ନୈଷ୍ଠିକ ଚିକିତ୍ସାଳୟ ଆଦି ଦର୍ଶନରେ ଯେକୌଣସି ବ୍ୟକ୍ତି ସଂସ୍ଥାର ଗତିବିଧି ଓ କାର୍ଯ୍ୟକଳାପ ସମ୍ବନ୍ଧରେ ସହଜରେ ଅନୁମାନ କରି ପାରିବ ।

୪ ହଜାର ଶାଖା ବିଶିଷ୍ଟ ସୁସଂଗଠିତ ଅଖିଳ ଭାରତୀୟ ଗାୟତ୍ରୀ ପରିବାର ଜରିଆରେ ୫ ଲକ୍ଷ ସଦସ୍ୟଙ୍କ ଦ୍ୱାରା ନୈତିକ ଏବଂ ସାଂସ୍କୃତିକ ପୁନରୁତ୍ଥାନ ଉଦ୍ଦେଶ୍ୟରେ ଯୁଗ-ନିର୍ମାଣ ଅଭିଯାନ ଆରମ୍ଭ କରା ଯାଇଛି । ଉକ୍ତ ଅଭିଯାନ ଜନସାଧାରଣଙ୍କ ମଧ୍ୟରେ ଉଚ୍ଚ ଭାବନା ଓ ଆଦର୍ଶବାଦିତା ସ୍ଥାପନ କରିବା ଦିଗରେ ଆଶା ଜନକ ସଫଳତା ଅର୍ଜନ କରି ପାରିଛି ।

ବେଦ, ଉପନିଷଦ, ଦର୍ଶନ, ସ୍ମୃତି, ବ୍ରାହ୍ମଣ, ଆରଣ୍ୟକ, ପୁରାଣ ଆଦି ସମସ୍ତ ଭାରତୀୟ ଧର୍ମ ଗ୍ରନ୍ଥ ମାନଙ୍କର ସରଳ ହିନ୍ଦୀ ଅନୁବାଦ ଓ ପ୍ରସାର ଗାୟତ୍ରୀ ତପୋଭୂମିର ଏକ ଅନୁପମ ସଫଳତା । 'ଅଖଣ୍ଡ ଜ୍ୟୋତି' ଓ 'ଯୁଗ-ନିର୍ମାଣ ଯୋଜନା' (ହିନ୍ଦୀ, ଓଡ଼ିଆ, ଗୁଜରାଟୀ, ମରାଠୀ, ଇଂରାଜୀ) ଆଦି ମାସିକ ପତ୍ରିକା ଅତି ସଫଳତାର ସହିତ ପ୍ରକାଶିତ ହୋଇ ଆସୁଛି ଏବଂ ବ୍ୟକ୍ତି ଓ ସମାଜର ନବ-ନିର୍ମାଣ ଦିଗରେ ମହତ୍ତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛି । ଯଦି କେବେ ମଥୁରା ଆସିବାର ସୁଯୋଗ ମିଳେ ତେବେ ଗାୟତ୍ରୀ ତପୋଭୂମିରେ ଥରେ ପଦାର୍ପଣ କରି ପ୍ରସନ୍ନତା ଲାଭ କରିବାର ସୁଯୋଗ ନିଅନ୍ତୁ ।





ନୈତିକ ଏବଂ ସାଂସ୍କୃତିକ ପୁନରୁତ୍ଥାନ ନିମିତ୍ତ 'ଯୁଗ-ନିର୍ମାଣ ଯୋଜନା' ଆନ୍ଦୋଳନ ବିଗତ ଦଶବର୍ଷ ହେଲା ଉଲ୍ଲେଖନୀୟ କାର୍ଯ୍ୟ କରିଆସିଛି । ଦେଶ ଓ ବିଦେଶରେ ଏହାର ଏକ ଲକ୍ଷ ସକ୍ରିୟ କାର୍ଯ୍ୟକର୍ତ୍ତା ଚାରିହଜାର ଶାଖାରେ ସଂଗଠିତ ରୂପେ ଶତ-ସୂତ୍ରୀ ରଚନାତ୍ମକ କାର୍ଯ୍ୟକ୍ରମରେ ତତ୍ପରତା ପୂର୍ବକ ସଂଲଗ୍ନ ଅଛନ୍ତି ।

ଆନ୍ଦୋଳନର ବିଚାରଧାରା ପ୍ରସାର ନିମିତ୍ତ "ଅଖଣ୍ଡ ଜ୍ୟୋତି" (ହିନ୍ଦୀ) ମାସିକ ପତ୍ରିକା ଏବଂ କାର୍ଯ୍ୟ ପଦ୍ଧତିର ପ୍ରସାର ନିମିତ୍ତ "ଯୁଗ-ନିର୍ମାଣ ଯୋଜନା" (ହିନ୍ଦୀ) ମାସିକ ପତ୍ରିକା ପ୍ରକାଶ ପାଉଛି । ଏହି ଦୁଇ ପତ୍ରିକାର ମିଳିତ ସଂସ୍କରଣ ଓଡ଼ିଆ, ଗୁଜୁରାଟୀ, ମରାଠୀ ଓ ଇଂରାଜୀରେ ମଧ୍ୟ ପ୍ରକାଶ ପାଉଛି ।

ବିଚାରକ୍ରାନ୍ତି ଏବଂ ଭାବନାତ୍ମକ ନବ-ନିର୍ମାଣ କାର୍ଯ୍ୟକ୍ରମ ଉପରେ ଅନେକ ପାଠ କରିବା ନିମିତ୍ତ ୨୫ ପଇସିଆ ସିରିଜର ଅତ୍ୟନ୍ତ ଆକର୍ଷକ ପୁସ୍ତିକା ବହୁ ସଂଖ୍ୟାରେ ପ୍ରକାଶିତ ହେଉଛି । ବର୍ତ୍ତମାନ ସୁଦ୍ଧା ୪୦୦ ପୁସ୍ତକ ହିନ୍ଦୀରେ ପ୍ରକାଶିତ ହୋଇ ସାରିଛି । ଓଡ଼ିଆ, ଗୁଜୁରାଟୀ, ମରାଠୀ ଓ ଇଂରାଜୀରେ ମଧ୍ୟ ଏସବୁ ପ୍ରକାଶ କରାଯାଉଛି ।

ଆଦର୍ଶ ବ୍ୟକ୍ତିତ୍ୱ ନିର୍ମାଣ ନିମିତ୍ତ ଗାୟତ୍ରୀ ତପୋଭୂମିରେ ଏକ ବର୍ଷୀୟ ଶିକ୍ଷଣ-କ୍ରମ ମଧ୍ୟ ଆରମ୍ଭ କରାଯାଇଛି । ଏଥିରେ ଜୀବନ ଯାପନ କଳା—ଆତ୍ମ-ନିର୍ମାଣ, ସଙ୍ଗୀତ, ଭାଷଣ, ଲେଖନ, ପ୍ରେସ-ବ୍ୟବସ୍ଥା ଏବଂ ଜନ-ନେତୃତ୍ୱର ବିଧି-ବଦ୍ଧ ଶିକ୍ଷା ଦିଆଯାଏ । ବିଶେଷ ସମ୍ପର୍କ ପାଇଁ ଯୁଗ-ନିର୍ମାଣ ଯୋଜନା, ମଥୁରା (ଉ: ପ୍ର:) ଠିକଣାରେ ପତ୍ର ବ୍ୟବହାର କରିପାରନ୍ତି ।



ମୁଦ୍ରଣାଳୟ:—ଯୁଗ-ନିର୍ମାଣ ପ୍ରେସ, ମଥୁରା (ଉ: ପ୍ର:)